ବାଲ୍ମୀକସ୍ତୁଙ୍ଗମନ୍ଦରେଣମଥିତଃ ସୀତାରମାସମ୍ଭବଃ
ସୁଗ୍ରୀବାମରଭୂରୁହୋଽଙ୍ଗଦଗଜଃ ସୌମିତ୍ରିଚନ୍ଦ୍ରୋଦୟଃ
ବାତୋତ୍ପନ୍ନମଣିର୍ବିଭୀଷଣସୁଧଃ ପୌଲସ୍ତ୍ୟ ହାଳାହଳଃ
ଶ୍ରୀ ରାମାୟଣ ଦୁଗ୍‌ଧସିନ୍ଧୁରନଘଂ ଭୂୟାତ୍ ଜଗତ୍‌ଶ୍ରେୟସେ ॥

କୌଶଲ୍ୟା ଜଠରାଳବାଳ କଳିତଃ ସିକ୍ତୋଦଶସ୍ୟନ୍ଦନ-
ସ୍ନେହାଦ୍ଭିର୍ବିତତଶ୍ଚ ସୋଦରମହାଶାଖାଭିରଭ୍ୟୁନ୍ନତଃ
ରକ୍ଷୋବ୍ରାତନିଦାଘତାପଶମନଃ ସୀତାଲତାଲିଙ୍ଗିତ-
ସ୍ଥାପ୍ୟାର୍ଥିଶ୍ରମନୁଦ୍ଦଦାତୁ ସୁଫଳଂ ଶ୍ରୀରାମକଳ୍ପଦ୍ରୁମଃ ॥

( ଯତିରାଜଃ )

ତନ୍ନାମାମୃତପାନ-ତୃପ୍ତ-ହୃଦୟୋ ନିତ୍ୟଂ ତଦାୟୁଷ୍ଟବ
ସ୍ତବାସ୍ରକ୍ଷିସମାହିତାମରତନୁ ସ୍ତଦ୍ଭକ୍ତଶ୍ଚ ଶୋକନୁତ୍
ତତ୍କୈଙ୍କର୍ଯ୍ୟପରାୟଣସ୍ତ୍ୱଦୁଚିତ ପ୍ରେଷ୍ୟସ୍ତଦାଜ୍ଞାହତା-
କ୍ଷେଷାରାତି କୁଳୋଲ୍ଲୁନାତୁ ଦୁରିତାରଣ୍ୟଂ ସମୀରାତ୍ମଜଃ ॥

( ଯତିରାଜଃ )

# ଜାନକୀଶ ବିଳାସ

## ପ୍ରଥମ ଅଧ୍ୟାୟ

ଜୟଶ୍ରୀ ଦଶରଥ ସୁତ । ଜୟ ଜନକ ଜାତପତି ॥୧॥
ଜୟ କୋଶଳଦେଶପତି । ଜୟ ବିଜିତ ଦଶକଣ୍ଠ ॥୨॥
ଜଳଜ ଜିତ ଯା ଆନନ । ଜଳଜାସନଙ୍କ ବନ୍ଦନ ॥୩॥
ଯଜ୍ଞମଣ୍ଡଳ କଉଶିକ । ଯାଗର ରକ୍ଷଣ କାରକ ॥୪॥
ଜିଷ୍ଣୁ ପ୍ରମୁଖ ଦେବଯାକ । ଯାହାଙ୍କ ଚରଣେ ସେବକ ॥୫॥
ଜଳ ସହିତ ଅମ୍ବୁଦାଳି । ଜିତିଛି ଯାହା ଅଙ୍ଗଶାଳି ॥୬॥
ଯାହାଙ୍କ ପାଦପଦ୍ମ ନୀର । ଜଟାରେ ଧରି ଗୌରୀବର ॥୭॥
ଜଗତେ ହେଲେ ଅଧିକାରୀ । ଯୋଗିଏ ନପାନ୍ତି ସେ ବାରି ॥୮॥
ଯେଉଁ ଏମନ୍ତ ରାମ ଭୂମ୍ବ । ଜଳଜ ପଦେ ନାହିଁ ଭବ, ॥୯॥
ଜ ଆଦ୍ୟେ କରି ପରକାଶ । ଜାନକୀ ଈଶଙ୍କ ବିଳାସ ॥୧୦॥
ଜଳ୍ପିବ କେଉଁ ପରକାର । ଜୁଗୁପ୍ସା ଏକା ହେବ ଘୋର ॥୧୧॥
ଜଗତ ପାପିଙ୍କ ପାବନ । ଯୋ ହେତୁ ହୋଇଛ ଆପଣ ॥୧୨॥
ଜାଣି ସେ କଥା କରି ଧୃତି । ଜନ୍ମାଇ ଅଛି ଏହା ମତି ॥୧୩॥
ଜିହ୍ମଗଅରି ସ୍କନ୍ଧ ଚଢ଼ା । ଜିଷ୍ଣୁ ହୃଦୟାନନ୍ଦବଢ଼ା ॥୧୪॥
ଜଳେ ଜଣାନ୍ତେ ଗଜପୀଡ଼ା । ଜାଳିଲ ତାର ଭୟ ଭିଡ଼ା ॥୧୫॥
ଯାହାଙ୍କୁ ଅଜାମିଳ ବୁଢ଼ା । ଜପି ହୋଇଲେ ପାପଛଡ଼ା ॥୧୬॥
ଜଡ଼ ମୁଁ ହୋଇ ସେହି ନାମ । ଜପନ୍ତେ ନୋହିବ କି ଧର୍ମ ॥୧୭॥
ଜାଣିଲ ଏହା ଭଲି ଭଲି । ଜାନକୀ ଈଶନାମ ବୋଲି ॥୧୮॥
ଯତନେ ଭାଷା ପଦବନ୍ଧେ । ଯେବେ ମୁଁ ରଚିବି ସ୍ୱଚ୍ଛନ୍ଦେ ॥୧୯॥
ଜାନକୀ କାନ୍ତଙ୍କ ଚରିତ । ଯାମିନୀ ଦିବା ହେବ ସ୍ମୃତ ॥୨୦॥
ଜନ୍ମ ମରଣ ସିନ୍ଧୁ ମୁହିଁ । ସିବ ତେବେ ବା ପାରି ହୋଇ ॥୨୧॥
ଜନମ ଆଦ୍ୟ ଆଜ ଯାଏ । ଜଗତ ମଣି ସତ୍ୟ ପାଏ ॥୨୨॥

---

(୫) ଜିଷ୍ଣୁ—ଇନ୍ଦ୍ର । (୧୪) ଜିହ୍ମଗଅରି—ଗରୁଡ଼ ।

ଜଞ୍ଜାଳ ଜାଲକାରେ ପଡ଼ି । ଜୀବନ ଯିବ ମୋର ଗୁଡ଼ି ॥୨୩॥
ଯୋଗ ପଣ୍ଡିତ ହେ ସୁଜନେ । ଜଡ଼ ମୁଁ ଅଟେ ତ ଭୁବନେ ॥୨୪॥
ଜାଣିଲେ ଏ ଗୀତର ଦୋଷ । ଜନେ ନ କରିବ ପ୍ରକାଶ ॥୨୫॥
ଜଳ୍ପିବ ଏ କଥା ବର୍ଗର । ଯେ ଯାହା ବୁଦ୍ଧି ଅନୁସର ॥୨୬॥
ଯିବାକୁ ତର ଭବାବଧି । ଜଣେତ ଗୀତ କରେ ସିଦ୍ଧି ॥୨୭॥
ଜୟ କନ୍ଦର୍ପ ଦର୍ପହାର । ଜୟ ପାର୍ବତୀ ପ୍ରୀତ (ଅ)କାର ॥୨୮॥
ଜାହ୍ନବୀଧର ଶୂଳପାଣି । ଯାଗନାଶକ ଅନ୍ଧକାରି ॥୨୯॥
ଜଳଜ ନେତ୍ରାନ୍ତ ଭ୍ରମରେ । ଯେବେ ପଡ଼ିବ ମୋହିଠାରେ ॥୩୦॥
ଜାନକୀ ରମଣ ରସାର୍ଣ୍ଣବ । ଯିବି ମୁଁ ପାର ହୋଇ ଜବ ॥୩୧॥
ଜୟ ପବନଦେବବେଟା । ଜାମ୍ବୁନଦାଭ ଗାତ୍ର ଛଟା ॥୩୨॥
ଜାନକୀ ସନ୍ତାପିତ କଣ୍ଠା । ଜନ୍ୟେ ନାଶିଲ ରଘୁ ମୋଟା ॥୩୩॥
ଜଣାଉଅଛି ତାଙ୍କୁ ଜୀବେ । ଜଡ଼ ମୁଁ ମୋରେ କୃପା ଲଭେ ॥୩୪॥
ଯେବେ ହୋଇବ ଭୁମ୍ଭର । ଜାଣିମି ଗୀତ ପାରିବାର ॥୩୫॥
ଜାନକୀ ରମଣ ବଳାସାଖ୍ୟ । ଯଥା କହୁଛନ୍ତି ହେବେ ଲେଖ୍ୟ ॥୩୬॥
ଯୁଗ୍ମ ନବମାକ୍ଷରେ ପଦ । ଜ ବର୍ଣ୍ଣ ସ୍ଥିତ ଆଦ୍ୟ ମଧ୍ୟ ॥୩୭॥
ଜଗନ୍ନାଥଙ୍କ ଅଗ୍ରଜ । ଜାୟା ସଙ୍ଖ୍ୟାରେ ପଦପୁଞ୍ଜ ॥୩୮॥
ଯୁଗ ବେଦାନ୍ତ ଶତାଧ୍ୟାୟ । ଯତ୍ନେ ହୋଇବେ ଶେଷୋଦୟ ॥୩୯॥
ଜାହ୍ନବୀଧର ହନେ ଶୁଭଙ୍ଖ । ଜ୍ୟାଧର କୈଳାସର ଶିଖେ ॥୪୦॥
ଜାହ୍ନବୀ କତ ରବଣତ । ଯୋ ଗୃହ ସେ ହୋଇଛି ପୂତ ॥୪୧॥
ଯୁକ୍ତ ଯେ ମଧ୍ୟେ ଏକ ପିଢ଼ା । ଜାମ୍ବୁନଦରେ ହେବ ଢଡ଼ା ॥୪୨॥
ଜଳଜାସନେ ବସି ତହିଁ । ଜପ କରନ୍ତି ନିଷ୍ଠ ହୋଇ ॥୪୩॥
ଯୋଗିଯେ ସବୁଛନ୍ତି ପାଶ । ଯେଉଁ ଏମନ୍ତ ବ୍ୟୋମକେଶ ॥୪୪॥
ଜୟନ୍ତୀ ତାଙ୍କ ବାମେ ରହି । ଜଣାନ୍ତି ଭକ୍ତଭବ ବହି ॥୪୫॥
ଜୟ ହେ ଜଗତନିବାସି । ଜାୟା ମୁଁ ତୁମ୍ଭ ପୁଣି ଦାସୀ ॥୪୬॥
ଜୀମୂତ ଶ୍ୟାମ ରାମଲୀଳା । ଜଳପ ମୋତେ କରି ମାଳା ॥୪୭॥
ଜଗତ ଜନନୀ, କପରେ । ଜନ୍ମିଲେ ସୀତା ନାମ ଧରେ ॥୪୮॥
ଜୀବନାଧାର ମୂର୍ତ୍ତି ରାମ । ଜ୍ୟା ତଳେ ହେବାର ଜନମ ॥୪୯॥

---

(୩୩) ଜନ୍ୟେ—ଯୁଦ୍ଧରେ । (୪୦) ଜ୍ୟାଧର—ପର୍ବତ ।
(୪୩) ଜଳାଜସନେ—ପଦ୍ମାସନରେ । (୪୯) ଜୀବନାଧାର—ମେଘ ।

ଯକ୍ଷିଣ ବିଶ୍ୱାମିତ୍ର ସଙ୍ଗେ । ଯିବାର ସିଦ୍ଧାଶ୍ରମ ରଙ୍ଗେ ||୫୦||
ଜଗତ ହିଂସିକା ତାଡ଼କା । ଜୀବକୁ ନେମା ଶର ଯୋଖି ||୫୧||
ଯୋଡ଼ଏ ଶରେ ସୁବାହୁକୁ । ଯେ ରୂପେ କଲେ ବିନାଶକୁ ||୫୨||
ଜଳଧି ଜଳେ ମାରିଚର । ଯେମନ୍ତେ କରାଇଲେ ଘର ||୫୩||
ଯୋଗୀଶ କଉଶିକଙ୍କର । ଯାଗକୁ ରକ୍ଷା କରିବାର ||୫୪||
ଯିବା ମାର୍ଗରେ ଗୌତମଙ୍କ । ଜାୟାଙ୍କୁ କରିବାର ମୋକ୍ଷ ||୫୫||
ଜନକ ପୁରେ ତ୍ରମ୍ବ ଚାପ । ଜ୍ୟା ଦେଇ କରିବାର ଲୋପ ||୫୬||
ଜାନକୀ ହେବାର ବିବାହ । ଜାମଦଗ୍ନ୍ୟଙ୍କ ବଳକ୍ଷୟ ||୫୭||
ଯେଉଁ ରୂପରେ ତହୁଁ ରାମ । ଯାନେ ଆସିଲେ ନିଜ ଗ୍ରାମ ||୫୮||
ଯୁବରାଜତ୍ୱ ତାହାଙ୍କର । ଯେ ରୂପେ ଭଙ୍ଗ ହେଲା ଖର ||୫୯||
ଜାୟାସାନୁଜ ସଙ୍ଗେ ଧରି । ଜାଙ୍ଗଲେ ହୋଇଲେ ବିହାରୀ ||୬୦||
ଜନ ହିଂସକ ବିରାଧର । ଜୀବନ ବାଣରେ ନେବାର ||୬୧||
ଜଳଧିବାଧି ବାକ୍ୟେ ରାମ । ଯିବାର ପଞ୍ଚବଟୀ ବନ ||୬୨||
ଜାଣନ୍ତେ ସୂର୍ପଣଖା ଯୋଷା । ଜରେ ଛେଦିବା କର୍ଣ୍ଣ ନାଶା ||୬୩||
ଯୁଦ୍ଧକୁ ଆସନ୍ତେ ଖରାଦି । ଜୀବନେ ମାରି ଶରେ ରୁନ୍ଧି ||୬୪||
ଜାୟା ବଚନୁ ଶାମଳାଙ୍ଗ । ଯିବାର ମାରି ହେମ ମୃଗ ||୬୫||
ଯାଚକ ବେଶରେ ରାବଣ । ଜାନକୀ କରିବା ହରଣ ||୬୬||
ଜଟାୟୁ କହିବା ଉଦନ୍ତ । ଯେ ରୂପେ କବନ୍ଧର ହତ ||୬୭||
ଯୋଗିନୀ ଶବରୀ ଦର୍ଶନ । ଯିବାର ଋଷ୍ୟମୂକ ପୁଣ ||୬୮||
ଜ୍ୟାଦେବ ରୂପେ ବାତ ଗୃଷ୍ଠ । ଯେପରି ହେଲେ ରାମ ଭେଟ ||୬୯||
ଜ୍ୱଳନ ରଖି ରବିସୁତ । ଜିତ୍ୱର ରାମେ ହେବା ମିତ ||୭୦||
ଜିଷ୍ଣୁ ସୁତଙ୍କୁ ମିତ୍ରଛଳେ । ଜରେ ନାଶିବା ରାମ ହେଳେ ||୭୧||
ଜ୍ୟାପତି ହେବା କୀଶୋତ୍ତମ । ଯିବାର ମାଲ୍ୟବନ୍ତ ରାମ ||୭୨||
ଜମାଇ ସୈନ୍ୟ କପିପତି । ଜାନକୀ ଖୋଜାଇବା ରୀତି ||୭୩||
ଜଳଧି ଲଙ୍ଘି ବାତୋଦ୍‌ଭବ । ଜ୍ୟାପୁତ୍ରୀ କରିବାର ଠାବ ||୭୪||
ଯାତୁଧାନଙ୍କୁ ଦେଇ ଶଙ୍କା । ଜ୍ୱଳନେ ପୋଡ଼ିବାର ଲଙ୍କା ||୭୫||

---

(୬୨) ଜଳଧିବାଧି—ଅଗସ୍ତ୍ୟ । (୭୦) ଜ୍ୱଳନ—ଅଗ୍ନି, ଜିତ୍ୱର—ଜୟଶୀଳ । (୭୧) ଜିଷ୍ଣୁସୁତ—ବାଳି । (୭୨) ଜ୍ୟାପତି—ରାଜା, କୀଶୋତ୍ତମ—ସୁଗ୍ରୀବ ।

ଜଳ ନିଧିକି ଲଙ୍ଘି ପୁଣ । ଯଥା ଆସିଲେ ହନୁମାନ ॥୭୬॥
ଜାନକୀ ତଦନ୍ତ ଟୋଠର । ଯାବନ୍ତ ସ୍ୱରେ କରିବାର ॥୭୭॥
ଜାମ୍ବବ ଆଦି କପି ବୃନ୍ଦ- । ଜାକ ଘେନଣ ରାମଚନ୍ଦ୍ର ॥୭୮॥
ଜଲଧି ବାନ୍ଧି ହେବା ପାରି । ଜନ୍ୟ ଆରମ୍ଭି ଲଙ୍କାପୁରି ॥୭୯॥
ଜନ ହିଂସକ କୁମ୍ଭକର୍ଣ୍ଣ । ଜିଷ୍ଣୁ ଅହିତ ଦଶାନନ ॥୮୦॥
ଯେତେକ ଦୁର୍ଜନ ରାକ୍ଷସ । ଯୁଦ୍ଧରେ କରିବାର ନାଶ ॥୮୧॥
ଜାନକୀ ଜ୍ୱଳନ ପ୍ରବେଶ । ଜମ୍ଭାରି ଆଦି ସ୍ତୁତି ଭାଷ ॥୮୨॥
ଜଳନ୍ତେ ଜାଣି ବୈଶ୍ୱାନର । ଜାନକୀ ରାମଙ୍କୁ ଦେବାର ॥୮୩॥
ଯତ୍ତ ବଶ୍ରବା ଯାନ ସୁଚେତ । ଜମାଇ ମନ୍ତ୍ରୀ ଥିଲେ ଯେତେ ॥୮୪॥
ଯବୀୟୁ କରେ ପୀତାବର । ଜ୍ୟା ପାଳ ଶାର୍ଙ୍ଗୀକି ଦେବାର ॥୮୫॥
ଯାହାର ନାମ ପୁଷ୍ପଯାନ । ଜାୟାକୁ ତହିଁ ବସାଇଣ ॥୮୬॥
ଜାମ୍ବବ ସୁଗ୍ରୀବାଦି ସୈନ୍ୟ- । ଯାକ ବସାଇ ତହିଁ ପୁଣ ॥୮୭॥
ଯିବା କାଳରେ ଅଯୋଧ୍ୟାକୁ । ଜାୟାଙ୍କୁ ଚହ୍ନାଇ ସ୍ଥାନକୁ ॥୮୮॥
ଯକ୍ଷୀଶ ଭରଦ୍ୱାଜଙ୍କର । ଜୁଷ୍ଟ ଆଶ୍ରମେ ହୋଇବାର ॥୮୯॥
ଯିବାର ତହୁଁ ନନ୍ଦଗ୍ରାମ । ଜନନୀ ଶ୍ରୀଗୁରୁ ଦର୍ଶନ ॥୯୦॥
ଜାୟା ସହିତେ ଶ୍ରୀଅଯୋଧ୍ୟା । ଯିବାର ହୋଇ ଅତି ଶ୍ରଦ୍ଧା ॥୯୧॥
ଜନକ ହୋଇ ଉଲ୍ଲାସକ । ଯେ ରୂପେ ହେଲେ ଅଭିଷେକ ॥୯୨॥
ଯୁବ ରାଜନ ଭରତଙ୍କୁ । ଯତନେ କରିବା କଥାକୁ ॥୯୩॥
ଯତି ପତିଙ୍କ ସମାଗମ । ଯାମିନୀ ଚରଙ୍କ ଜନମ ॥୯୪॥
ଜଲଧି ଅରି କହିବାର । ଜାନକୀ କରାଇବା ଦୂର ॥୯୫॥
ଜନମ କୁଶ ଲବଙ୍କର । ଯାଇଣ ଶତ୍ରୁଘ୍ନ ବୀର ॥୯୬॥
ଯୁଦ୍ଧରେ ଲବଣର ପ୍ରାଣ । ଯମକୁ କରିବା ପ୍ରଦାନ ॥୯୭॥
ଯେ ଅଶ୍ୱମେଧ ଯାଗାରମ୍ଭ । ଯଥା ଚିହ୍ନିଲେ କୁଶଲବ ॥୯୮॥
ଜାନକୀ ପାତାଳ ପ୍ରବେଶ । ଯୋଗୀଶ କାଳ ଦୁରବାସ ॥୯୯॥
ଯେ ରୂପେ ହେଲେ ସମାଗମ । ଯବୀୟୁ ଲକ୍ଷ୍ମଣ ବର୍ଜନ ॥୧୦୦॥
ଜଙ୍ଗମ ସ୍ଥାବରାଦି ଯେତେ । ଯତ୍ତ ତାହାଙ୍କୁ ଘେନି ସାଥେ ॥୧୦୧॥
ଯେ ରୂପେ ହେଲେ ସ୍ୱର୍ଗାରୋହ । ଯାବନ୍ତ ମତେ ପ୍ରଭୁ କହ ॥୧୦୨॥
ଜାୟାଙ୍କ ଶୁଣି କରି ବାକ୍ୟ । ଜନ୍ମାଦିବଧି ଶ୍ରୀରାମଙ୍କ ॥୧୦୩॥

---

(୭୯) ଜନ୍ୟ—ଯୁଦ୍ଧ । (୮୫) ଯବୀୟୁ—କନିଷ୍ଠ ।

ଜଟେଶ ବସ୍ତାର କରଣ । ଜଳ୍ପନାରମ୍ଭ କଲେ ପୁଣ ।୧୦୪।
ଜୟନ୍ତ-ଜୟନ୍ତୀ ସମ୍ବାଦ । ଜନେ ଶୁଣିଣ ପାପଚ୍ଛେଦ ।୧୦୫।
ଯେଉଁ ଏ ଅନୁକରମଣି । ଜଗତାର୍ଣ୍ଣବୁ ତର ଶୁଣି ।୧୦୬।
ଜଡ଼ ଅଭକ୍ତ ଭକ୍ତରାମ । ଯାମିନୀ ଦବାରେ ଶ୍ରୀରାମ ।୧୦୭।
ଜଳଜପଦେ ଦେଇ ଚିତ୍ତ । ଜଳ୍ପଇ ରାମାୟଣ ଗୀତ ।୧୦୮।

ଇତିଶ୍ରୀ ଜାନକୀଶ ବିଳାସ ରାମାୟଣାନୁକ୍ରମଣିକାୟାଂ ଶିବଶିବା ସଂବାଦେ
ନାମ ପ୍ରଥମ ଅଧ୍ୟାୟଃ

## ଦ୍ୱିତୀୟ ଅଧ୍ୟାୟ

### ଜାହ୍ନବୀଧର ଉବାଚ

ଜାହ୍ନବୀଧର ଏଥୁଅନ୍ତେ । ଜାୟା ଆନନ୍ଦେ ପଚ୍ଚରନ୍ତେ ।୧।
ଜାଣି ତାହାଙ୍କ ଶୁଦ୍ଧ ଚିତ୍ତ । ଜଳ୍ପନ୍ତି ରାମଙ୍କ ଚରିତ ।୨।
ଜ୍ୟେଷ୍ଠଦେବାଧିପତି ଘର । ଯାତନା ନ ସହିଣ ଧରା ।୩।
ଯତ୍ନେ ସୁରଭି ରୂପ ହୋଇ । ଜଳଜାସନ ପାଶେ ଯାଇ ।୪।
ଯାଁବନ୍ତ ବାସନାକୁ ଜବେ । ଜଣାକୁ କଲେ ହମ୍ବାରବେ ।୫।
ଜଗତସ୍ରଷ୍ଟା ତାହା ଶୁଣି । ଜମ୍ଭାରି ଆଦି ସୁର ଘେନି ।୬।
ଯାଇ ହୋଇଲେ ପରବେଶ । ଯହିଁ ଶୟନ ପୀତବାସ ।୭।
ଯୋଡ଼ ଭକ୍ତରେ ବେନିକର । ଜଣାନ୍ତେ ବ୍ରହ୍ମା ସ୍ତୁତି ଗିର ।୮।
ଜନାରଦନ ତାହା ଶୁଣି । ଜାଗ୍ରତେ କହିଲେ ଏ ବାଣୀ ।୯।
ଜୟା ଦେବୀ ଘେନିଣ ସଙ୍ଗତେ । ଜଳ୍ପ ମିଳିଲ କି ନିମିତ୍ତେ ।୧୦।
ଜଳଜାଳୟାପ୍ରିୟଙ୍କର । ଯତନେ ଶୁଣି ଏହି ଗିର ।୧୧।
ଜଳଜଭବ କରଯୋଡ଼ । ଜଣାନ୍ତି ଭକ୍ତିଭାବେ ଜଡ଼ ।୧୨।
ଜଗତାହିତ ଦଶଶିର । ଜଗଦ୍‌ବହାଂକୁ ହୋନ୍ତେ ଭାର ।୧୩।
ଜଣା କରିବା ନିମିତ୍ତରେ । ଜମି ଆସିଲେ ସର୍ବସୁରେ ।୧୪।

---

(୧୦୬) ଅନୁକରମଣି—ଅନୁକ୍ରମଣି । (୪) ସୁରଭି—ଗାଈ ।
(୧୧) ଜଳଜାଳୟାପ୍ରିୟ—ଭଗବାନ୍ । (୩) ଜ୍ୟେଷ୍ଠଦେବାଧିପତି—ରାକ୍ଷସରାଜ । (୧୩) ଜଗତାହିତ—ପୃଥିବୀର କ୍ଷତିକାରକ, ଜଗଦ୍‌ବହା—ବାସୁକୀ ।

ଜନମି ତୁମ୍ଭେ ନରରୂପେ । ଯୁଦ୍ଧେ ତାହାଙ୍କୁ ମାର କୋପେ ।୧୫।
ଜଗଦୀଶ୍ୱର ସ୍ୱେଚ୍ଛା ରୂପେ । ଜଣାଣ ଶୁଣିକରି ଆପେ ।୧୬।
ଜୃମ୍ଭାକୁ ମାରଣ କହିଲେ । ଜାତ ମୁଁ ହେବ ରଘୁକୁଳେ ।୧୭।
ଜାନକୀ ସ୍ୱରୂପେ କମଳା । ଜନ୍ମିବେ ମିଥିଳା ଅଚଳା ।୧୮।
ଯାଇଣ ତୁମ୍ଭେମାନେ ଏବେ । ଯେ ଯାହା ପୁରେ ରହ ସବେ ।୧୯।
ଜନାରଦନଙ୍କ ଏମନ୍ତ । ଜଳ୍ପନ କରି କର୍ଣ୍ଣଗତ ।୨୦।
ଜଗସ୍ରଷ୍ଟାଦି ଦେବଆଳି । ଯେ ଯାହା ସଦନରେ ମିଳି ।୨୧।
ଜମ୍ବାଳଜାକ୍ଷ ବକ୍ଷୁଙ୍କର । ଜାତ ଇଚ୍ଛିଲେ ମାନସର ।୨୨।
ଜନକ ନୃପତି ଏ ଅନ୍ତେ । ଯାଗକୁ ଇଚ୍ଛାକରି ଶାନ୍ତେ ।୨୩।
ଜଜ୍ଞ ଶୁଦ୍ଧାର୍ଥେ ଚଷିବାରୁ । ଜନ୍ମିଲେ କନ୍ୟାସ୍ୱେ ସୀତାରୁ ।୨୪।
ଜନକ ଋଷି ତାଙ୍କୁ ନେଇ । ଜାୟାଙ୍କ କୋଳେ ଦେଲେ ଥୋଇ ।୨୫।
ଜେମା ମୋହର ହେଲେ ବୋଲି । ଯତ୍ନରେ ପାଳିଲେ ସେ ବାଳି ।୨୬।
ଯାନ୍ତେ ବଂଶତ ଏକ ଦିନ । ଜାନକୀ ବୋଲି ଦେଲେ ନାମ ।୨୭।
ଜଗତ ତାତଙ୍କର ଗିରେ । ଜନକ ଆଗେ ସେ କାଳରେ ।୨୮।
ଯେଉଁ ନାରଦ ଶୁଦ୍ଧ ଗାନ । ଯତ୍ନେ ସେ ବାହି ବୀଣା ଯନ୍ତ୍ର ।୨୯।
ଯନ୍ତରେ ଗାଇ ଗୀତ ରସ । ଜ୍ୟୋତିରେ ହେଲେ ପରବେଶ ।୩୦।
ଯଶୋଧନେଶ ତାଙ୍କୁ ଚୁହିଁ । ଜୁହାର କଲେ ତୋଷ ବହି ।୩୧।
ଜଳେ ଚରଣ ଧୋଇ ଭଲେ । ଜନେ ବସାଇ ପଚାରିଲେ ।୩୨।
ଯେ ପାଇଁ ଆସିଅଛ ତୁମ୍ଭେ । ଜଣାଅ ପୁଚ୍ଛା କରୁ ଆମ୍ଭେ ।୩୩।
ଯତିପତି ସେ ତାହା ଶୁଣି । ଜନକ ଆଗେ ଏତେ ଭଣି ।୩୪।
ଜାଣି ତୁମ୍ଭର ସୁତା ଜାତ । ଜଳପିଛନ୍ତି ଏହା ତାତ ।୩୫।
ଜାହ୍ନବୀଧର ପୂର୍ବକାଳେ । ଯେଉଁ ଧନୁକୁ ଧରି ଭଲେ ।୩୬।
ଜଗତ ହନ୍ତକ ତ୍ରିପୁର । କଣି ନାଶିଲେ ଧରାଭାର ।୩୭।
ଜନକ ଆହେ ସେ କାର୍ମୁକ । ଯତ୍ନେ ରଖିଲେ ତୁମ୍ଭ ତକ ।୩୮।
ଯେ ତା ହାତକୁ ଉଠାଇବ । ଜାନକୀ ତାଙ୍କୁ ସମର୍ପିବ ।୩୯।
ଜଳପି ଏତେ ତପଶାଳୀ । ଯାଉଛୁ ବୋଲି ଗଲେ ଚଳି ।୪୦।
ଜନକ ହୋଇ ତୋଷ ମନା । ଜ୍ୟାଧର ନତ୍ତେ କଲେ ପୂଜା ।୪୧।
ଜନେ ଏ ଅନ୍ତେ ଶୁଣ କଥା । ଯେ ଦଶରଥ ମହାରଥୀ ।୪୨।

---

(୪୧) ଜ୍ୟାଧର—ଧନୁ ।

ଜ୍ୟେଷ୍ଠ ଭରଜା ହବନେ ତାଙ୍କ । ଜନମ କଲେ ସୁତା ଏକ ।୪୩।
ଜନ ପାଳକ ତାହା ଶୁଣି । ଜଟିଳ ବଶିଷ୍ଠଙ୍କୁ ଆଣି ।୪୪।
ଜାତକ ଆଦ୍ୟ ବିଧିମାନ । ଯେତେ ତା କଲେ ସମାପନ ।୪୫।
ଯିବାରୁ ଏକବିଂଶ ଦିନ । ଜାତକ ହୋଇ ତୋଷମନ ।୪୬।
ଜାଣି ସେ ସୁତାଙ୍କ ଶାନ୍ତତା । ତେମାଙ୍କୁ ନାମ ଦେଲେ ଶାନ୍ତା ।୪୭।
ଯାନ୍ତେ ଏ ରୂପେ କେତେ କାଳ । ସେ ଲୋମପାଦ ମହୀପାଳ ।୪୮।
ଜାଣନ୍ତେ ମିତ୍ର ସୁତା ଜାତ । ଯାନରେ ବସିଣ ତୁରିତ ।୪୯।
ଯାହାକୁ କରି ମିତ୍ରଙ୍କର । ଜନପଦରେ ହେଲେ ଖର ।୫୦।
ଜାଣି ତା ଅଜଙ୍କର ସୂନୁ । କୂଷରେ ଉଠିଲେ ଆଃସନୁ ।୫୧।
ଯତନେ ସମ୍ଭାବନା କରି । ଜାଣିଲେ ଆରୋଗ୍ୟ ପରୁରି ।୫୨।
ଜଳଜକର ସେ ଉତ୍ସରେ । ଜନ ଏ ହେଲେ ଧରି କରେ ।୫୩।
ଜମ୍ବୁନଦରେ ଶୋଭ୍ରବନ । ଯାତନ୍ତେ ବସିଲେ ସେ ପୁଣ ।୫୪।
ଯଥା ବିଧିରେ ଲୋମପାଦ । ଜଳପି ଦଶରଥ ପଦ ।୫୫।
ଜନମି ଥିବା ଶାନ୍ତା କନ୍ୟା । ଯାଚଣ୍ଡା କରି ମହାମନା ।୫୬।
ଜନପଦରେ ମିଳି ଭେଟେଲେ । ଜାମ୍ବୁ ମୂଳରେ ତାଙ୍କୁ ଦେଲେ ।୫୭।
ଯାନ୍ତେ ଏ ରୂପେ କେତେ ଦିନେ । ଯାତନା ପାଇ ପୁତ୍ର ହୀନେ ।୫୮।
ଜ୍ୟାଦେବମାନଙ୍କୁ ଡକାଇ । ଜନମ ପୁତ୍ର ହେବା ପାଇଁ ।୫୯।
ଜାତରୂପାଦି ନାନାରତ୍ନ । ଯାଚି ଦଅନ୍ତେ କରି ଯତ୍ନ ।୬୦।
ଜ୍ୟାଦେବଯୂଙ୍କ ସେହି କାଳେ । ଜଞ୍ଜାଳ କରି ଲୋଭ ଭୋଳେ ।୬୧।
ଜଳଣ କୋପାନଳେ ନୃପ । ଯାତନା ଦେଲେକ ଅମାପ ।୬୨।
ଯୂକେ ସେ ଦ୍ୱିଜଂକ ନାଯୂକ । ଜଳ୍ପିଲେ ଏ ରୂପରେ ବାକ୍ୟ ।୬୩।
ଜଳଦେ ଇନ୍ଦ୍ରଙ୍କ ଆଦେଶେ । ଜଳ ନ ବର୍ଷନ୍ତୁ ଏ ଦେଶେ ।୬୪।
ଜାଣିଣ ଲୋମପାଦ ରାଜା । ଜବେ କରନ୍ତେ ତାଙ୍କୁ ପୂଜା ।୬୫।
ଜାତେ କହିଲେ ସେହି ବେଗ । ଯେବେ ଆସିବେ ଋଷ୍ୟଶୃଙ୍ଗ ।୬୬।
ଜୀବନ ବରଷିବ ତେବେ । ଯୁତକ ନାହିଁ ଏଥିଲବେ ।୬୭।
ଜଳପି ଏହା ନୃପପାଶେ । ଯାଇ ସେ ଦ୍ୱିଜ ହେଲେ ବାସେ ।୬୮।
ଜନପଦରେ ବାର ବର୍ଷ । ଜଳ ନ ବରଷନ୍ତେ ଲେଶ ।୬୯।

---

(୫୯) ଜ୍ୟାଦେବ—ବ୍ରାହ୍ମଣ । (୬୩) ଯୂକେ—ଯୁକ୍ତେ ଶବ୍ଦ ବୋଲି ମନେହୁଏ । (୬୭) ଯୁତକ—ସନ୍ଦେହ ।

ଜନେ ମରଣ ଲଭି ନିତ । ଯମ ଗ୍ରାମକୁ କଲେ ଗତ ।୭୦।
ଜାଣିଣ ଲୋମପାଦ ନୃପ । ଜବନ ହୋଇନ୍ତେ ଯେନ ତାପ ।୭୧।
ଜାଣିଣ ସେ କଥା ସଚିବ । ଜଣେ କହିଲେ ବହି ଭାବ ।୭୨।
ଜରତା ବେଶ୍ୟାଙ୍କୁ ପେଶିବା । ଜଟିଲବରଙ୍କୁ ଆଣିବା ।୭୩।
ଯଥାର୍ଥ ମଣି ନରମଣି । ଜରତା ଡ଼କାଇ ସେ କ୍ଷଣି ।୭୪।
ଜାତ ରୂପରେ କର ତୋଷ । ଯାଅ ବୋଲନ୍ତେ ସେ ବାର୍ଲୀଷ ।୭୫।
ଯୋଷା ଦ୍ୱାଦଶ ଗୋଟି ଭୁଲେ । ଜାହ୍ନବୀ ଘାଟରେ ପ୍ରବେଶିଲେ ।୭୬।
ଜଳରେ ରଖିଣ ତରଣି । ଜଗିତ ଥିଲେ ଦାସ ଶ୍ରେଣୀ ।୭୭।
ଜରତା ଏକ ନାବେ ବସି । ଯହିଁରେ ଋଷ୍ୟଶୃଙ୍ଗ ଋଷି ।୭୮।
ଜନକ ସହିତରେ ଥିଲେ । ଜପିଣ ମନ୍ତ୍ରରାଜ ଭଲେ ।୭୯।
ଯିବାରେ ତହିଁ ପରବେଶ । ଯତଙ୍କ ଦେଖିଲେ ନିବାସ ।୮୦।
ଯୋଜନ ଅନ୍ତେ ତହୁଁ ରହି । ଯୋଗୀ ପିଅର ଯିବା ଗୃହିଁ ।୮୧।
ଯାମିନୀ ହୁଅନ୍ତେ ସେ କାଳେ । ଜଳରେ ଲୁଚିଲେ କମଳେ ।୮୨।
ଜଗତେ ଯୋଟିବାରୁ ତମ । ଜନେ ଶୋଇଲେ ଲଭି ଘୁମ ।୮୩।
ଯୁବତୀମାନେ ପଡ କୋଳେ । ଜଡ଼ି ରହିଲେ ରତି ଖେଳେ ।୮୪।
ଜଳଜ ହୋଇ ବନ୍ଦୀକତ । ଜ୍ୟୋସ୍ନମାନଙ୍କେ ହେଲେ ଯୁତ ।୮୫।
ଜ୍ୟେଷ୍ଠା ସହିତେ ସବିତାର । ଜ୍ୱଳିତ ହେଲେ ହୋଇ ତୋର ।୮୬।
ଯାମିନୀ ଶେଷରେ ବହ୍ମଣ୍ଡ । ଜଳେ ପଖାଳି ନିଜ ପିଣ୍ଡ ।୮୭।
ଜ୍ୟାରୁଢ଼ ମୁହୂର୍ତ୍ତିକେ ବସି । ଜପିଲେ ବିଷ୍ଣୁ ପଦ ଋଷି ।୮୮।
ଜାଣି ଜରତା ତାହା ଭଲେ । ଯାଇଣ ଯୋଷାଙ୍କର ଭୁଲେ ।୮୯।
ଯକ୍ଷାଶ ଋଷ୍ୟଶୃଙ୍ଗ କତ । ଯିବାରୁ ତାଙ୍କୁ ଦେଖି ଯତ ।୯୦।
ଯତନେ ସମ୍ଭାବନା କରି । ଜାଣିଲେ କୁଶଳ ପଚ୍ଚରି ।୯୧।
ଝଆଦ ଚରମେ ବସାଇ । ଝାବାକ୍ଷ ଫଳ ଦେଲେ ନେଇ ।୯୨।
ଯୁବତୀମାନଙ୍କ ସହିତେ । ଜରତା ତାହା ଭୁଞ୍ଜି ପ୍ରୀତେ ।୯୩।
ଜବା ଅଧର ଧୋଇ ଜଳେ । ଯତିଙ୍କି ସୁହିଁ କୁତୁହଳେ ।୯୪।
ଜର ମୋହିନୀ ନାଶ୍ରି ସଙ୍ଗେ । ଜରତା ବେଶ୍ୟା କହେ ରଙ୍ଗେ ।୯୫।
ଜଟିଳ ଶୁଣ ଦେଇ ଚିତ୍ତ । ଯେ ଫଳ ଭୁମ୍ଭ ବନେ ଜାତ ।୯୨।
ଯେଣୁ ତହିଁରେ ନାହିଁ ସ୍ୱାଦ । ଯୋଗୀଏ ଖାଇବାର ମଦ ।୯୭।

---

(୯୨) ଝଆଦ—ମୃଗ । (୯୫) ଜର—ଜଡ଼ ।

ଜଣାଇଁ ଏତେ ବେଶ୍ୟା ରଜା । ଯାଚଣ ଦେଲେ ସାଶ ଖଜା ।୯୮।
ଯୋଗଣ କର ତା ଜଟିଳ । ଜିହ୍ୱା ହୋଇଲା ସୁଚଞ୍ଚଳ ।୯୯।
ଯୋଗୀମାନଙ୍କୁ ତହୁଁ ଗୃହିଁ । ଜୁଷ୍ଟେ କହିଲେ ସେ ଗୋସାଇଁ ।୧୦୦।
ଜାଙ୍ଗଳ ଦେଖିଣ ତୁମ୍ବର । ଜୀବ କରବ ପବତର ।୧୦୧।
ଜନକ ନଆସୁ ଏ ଠାବ । ଯାଇ ଆସିବ ଗୃଲ ଜବ ।୧୦୨।
ଜରତା ବେଶ୍ୟା ତାହା ଶୁଣି । ଯୋଗୀଙ୍କି ସଙ୍ଗତରେ ଘେନ ।୧୦୩।
ଯାଇ ସକଳ ବାଳୀ ତୁଲେ । ଜାହ୍ନବୀ ପୁଳନେ ମେଳଲେ ।୧୦୪।
ଜଳ ମଧ୍ୟେ ତ ତର ସ୍ଥାପି । ଜ୍ୟାତୁଷ୍ଟ ପୂର୍ବୁ ଥିଲେ ରୂପି ।୧୦୫।
ଜାମ୍ବୁନଦର ପରଯଂକ । ଯୋଗାଡ଼ ରଖିଥିଲେ ଏକ ।୧୦୬।
ଯତିଙ୍କି ସୁବେଶ କରାଇ । ଯତନେ ଶୁଆଇଲେ ତହିଁ ।୧୦୭।
ଜପି ସେ ତପୀ ପଦବେନ । ଜଳପେ ଭକ୍ତରାମାଙ୍କାମ୍ନ ।୧୦୮।

ଇତିଶ୍ରୀ ଜାନକୀଶ ବିଳାସ ରାମାୟଣେ ଶିବଶିବା ସଂବାଦେ
ଆଦ୍ୟକାଣ୍ଡେ ଦ୍ୱିତୀୟୋଽଧ୍ୟାୟଃ ।

## ତୃତୀୟ ଅଧ୍ୟାୟ

### ଜହ୍ନୁଗଭୂଷଣ ଉବାଚ

ଜହ୍ନୁଗଭୂଷଣ ଏ ଅନ୍ତେ । ଜଳ୍ପନ୍ତ ପାର୍ବତୀ ପ୍ରତେ ।୧।
ଜରତା ବେଶ୍ୟା ଦିବ୍ୟ ବେଶେ । ଜଡ଼ ବସିଲେ ଋଷି ପାଶେ ।୨।
ଜାନୁ ଯୌବନ ଦେଖାଇଲେ । ଜାପୁଟି କରି ଚୁମ୍ବ ଦେଲେ ।୩।
ଜାତିରେ ସେ ତ ରୂପାଜୀବା । ଜାଣିନେ ଲଜ୍ଜା କି ରୂପେବା ।୪।
ଯଷ୍ଟିଶ ବିଭାଣ୍ଡ ନନ୍ଦନ । ଜରତା ହୃଦେ ଦେଖି ସ୍ତନ ।୫।
ଜବେ ପୁଚ୍ଛିଲେ ଏ କି ଫଳ । ଯତନେ ହୋଇଛି ବର୍ତ୍ତୁଳ ।୬।
ଜରତା ଏହି ରୂପେ ଶୁଣି । ଜଠାଇ କହିଲେ ଏ ବାଣୀ ।୭।
ଜାଣିବା ପାଇଁ ଯୁବାମତି । ଜାଠାଧରଙ୍କୁ ସ୍ଥାପି ସ୍ତୁତ ।୮।
ଜାଗ୍ରତେ କରୁଅଛୁ ପୂଜା । ଜାଣ ହେ ଋଷିକୁଳ ରାଜା ।୯।

---

(୧) ଜହ୍ନୁଗଭୂଷଣ—ଶିବ । (୩) ଜାପୁଟି—ଭିଡ଼ି ଧରି ।
(୭) ଜଠାଇ—ଛଳ ।

ଯେବେ ଆପଣ ଏହା ସ୍ୱର୍ଗ । ଯେବେ କରିବ ବହୁ ତୋଷ ।୧୦।
ଯେଉଁ କାମନା ତୁମ୍ଭ ମନେ । ଜଡ଼ୁଁ ଫଳିବ ବହନେ ।୧୧।
ଜରତାଠାରୁଁ ଏହି ରୂପେ । ଯତି ସେ ଶୁଣିକରି ଆପେ ।୧୨।
ଜହ୍ନର କଣ୍ଠୁଙ୍କ ସେବାରେ । ଯୁତ ହୋଇଲେ ଅଭ୍ୟନ୍ତରେ ।୧୩।
ଜରତା ହୃଦ କୁଚ ଧରି । ଜାନୁ ଯୁଗଳ ଆଶ୍ରା କରି ।୧୪।
ଜାହ୍ନବୀଧରାରିରେ ମଜ୍ଜି । ଜମ୍ଭନ କଲେ ଜ୍ଞାନ ତେଜ ।୧୫।
ଜାଳିକ ଧରି ସେହି କାଳେ । ଜବନେ ବାହି ନାବ ଜଳେ ।୧୬।
ଯାମିନୀ କାମିନୀର ଶେଷେ । ଯାନ୍ତେ ମିଳିଲେ ଚମ୍ପା ଦେଶେ ।୧୭।
ଜରତା ଋଷି ଆଣିମାର । ଜାଣି ଯେ ଚମ୍ପା ନରବର ।୧୮।
ଯାବନ୍ତ ପୂଜାଦ୍ରବ୍ୟ ଘେନି । ଯତି କତିରେ ହେଲେ ଗମି ।୧୯।
ଯୁଗଳ ପାଦେ ତାହାଙ୍କର । ଜୁହାର କଲେ ଶତବାର ।୨୦।
ଯଥାବିଧିରେ ପୂଜା କରି । ଯାଇଁ ମିଳିଲେ ନିଜ ପୁରି ।୨୧।
ଜମ୍ଭାରି ସେହି କାଳେ ପୁଣି । ଜୀମୂତେ ଘୋଡ଼ାଇ ଧରଣୀ ।୨୨।
ଜଳଧାରକୁ ବରର୍ଷି ଣ । ଯାତନା ନାଶିଲେ ତକ୍ଷଣ ।୨୩।
ଯାଗ ଆରମ୍ଭି ସେହି ଦେଶ । ଯାଚି ନୃପଙ୍କୁ ଦେଲେ ଶିଷ୍ୟ ।୨୪।
ଯେ ଲୋମପାଦ ମହାରାଜା । ଜାଣି ସେ ମୁନିଙ୍କର ମଜ୍ଜା ।୨୫।
ଜାଣିମା ପାରେ ଅଜସୁତ । ଜବନେ ପଠାଅନ୍ତେ ଦୂତ ।୨୬।
ଯେ ଦଶରଥ ସେହି କାଳେ । ଜାୟା ସହିତେ ତହିଁ ହେଲେ ।୨୭।
ଜନକ ଆସନ୍ତେ ତନୟୀ । ଜୁହାରି ହୋଇଲେ ବିନୋଇ ।୨୮।
ଯତିପତି ତ ଥିଲେ ତହିଁ । ଜାଜ୍ୱଲ୍ୟ ଶୋଭା ତାଙ୍କ ଗୃହିଁ ।୨୯।
ଜଟେଶ ଈଶଙ୍କର ଖେଦ । ଜନମାଇଲେ ନିଜ ହୃଦ ।୩୦।
ଜାଣି ତା ଦଶରଥ ଚିତ୍ତେ । ଜାମାତା କରିବା ନିମିତ୍ତେ ।୩୧।
ଜଳଜ ହୃଦପୁରେ ଭାଳି । ଜଗତେ ସେ ତ ମହାବଳୀ ।୩୨।
ଯତିଙ୍କି ବେଦିରେ ବସାଇ । ଜାୟାର୍ଥେ ସୁତା ଦେଲେ ନେଇ ।୩୩।
ଜାମ୍ବୁନଦାଦି ବାସବତ୍ତ । ଯୌତୁକ ଦେଲେ ଅଗଣିତ ।୩୪।
ଜନକଠାକୁ ସେ ସକଳ । ଜବେ ପେଶିଲେ ତପଶୀଳ ।୩୫।

---

(୧୫) ଜାହ୍ନବୀଧରାରି—କନ୍ଦର୍ପ । ଜମ୍ଭନ—ଭକ୍ଷଣ, ଏଠାରେ ରମଣ ଅର୍ଥରେ ପ୍ରଯୁକ୍ତ । (୧୬) ଜବନେ—ଶୀଘ୍ର ।
(୨୬) ପାରେ—ପାଇଁ ।

ଜାମ୍ବୁବାତ ତ ସୁତ ସ୍ଥାନ । ଜାତ ହେବାକୁ ତାଙ୍କ ନାନ ।୩୬।
ଯାକେ ଶ୍ୱଶୁର ଶାଶୁ ଭୁଲେ । ଯାନ୍ତେ ଅଯୋଧ୍ୟା ପୁରେ ହେଲେ ।୩୭।
ଯାଗ ତହିଁରେ କର ଜାତ । ଜ୍ୱଳନେ ଇଡ଼ୁ ମନ୍ତ୍ରେ ଘୃତ ।୩୮।
ଜାତବେଦ ସେ କାଳେ ଆପେ । ଯଜ୍ଞକୁଣ୍ଡରେ ଉଭା ଧାପେ ।୩୯।
ଜାମ୍ବୁ ପାତ୍ରରେ ଚରୁଧର । ଯତିଙ୍କି କହିଲେ ଏପର ।୪୦।
ଜରାସ୍ଥାନଙ୍କ ଜାତ ଚରୁ । ଯାଚିକୁ ଧର ଋଷି ଗୁରୁ ।୪୧।
ଜଗତ ସ୍ୱାମୀ ଏ ଚରୁରେ । ଜନ୍ମିବେ ଗୁରୁ ସ୍ୱରୂପରେ ।୪୨।
ଜଟିଳଶାର୍ଦ୍ଦୂଳ ତା ଶୁଣି । ଜ୍ୱଳନ କରୁ ଚରୁଆଣି ।୪୩।
ଜାମ୍ବାତ ତତପାଶେ ଥିଲେ । ଜଳଜକରେ ତାଙ୍କ ଦେଲେ ।୪୪।
ଜାଉତା ଧର ଅଜ ସୁତ । ଜୁଇ ହୋଇଲେ ଅନ୍ତର୍ହିତ ।୪୫।
ଜନଇନ ସେ ଚରୁ ନେଇ । ଯେଉଁ କୌଶଲ୍ୟା କଇକେଇ ।୪୬।
• ଯୁବତୀ ଦୁଇଙ୍କି ବାର୍ଣ୍ଟିଣ । ଯହୁଁ ସେ କଲେ ସମର୍ପଣ ।୪୭।
ଜଳଜନେତ୍ରୀ ସୁମିତ୍ରର । ଜାଣି ଆସିଲେ ହୋଇ ଉତ୍ସ୍ର ।୪୮।
ଯୋଷା ସେ ବେନି ଅଧେ ଅଧେ । ଯାଚି ତାହାଙ୍କୁ ଦେଲେ ସଧେ ।୪୯।
ଜେ ମନୁ (?) ସେ,ତନ ବାଳୀଶ । ଯତନେ ହେଲେ ଗର୍ଭବାସ ।୫୦।
ଜମ୍ଭଭେଦଙ୍କ ପ୍ରିୟାପ୍ରାଏ । ଯୋଷୀ ହୋଇଲେ ସେ ତନପେ ।୫୧।
ଜାୟା ସହିତେ ଋଷ୍ୟଶୃଙ୍ଗ । ଯାନ୍ତେ ମିଳିଲେ ପିତା ଆଗ ।୫୨।
ଜତଂକ ଦେଖିଣ ବଭଣ୍ଡ । ଜୁଷ୍ଟେ ଶୁଂଘିଲେ ଧରି ମୁଣ୍ଡ ।୫୩।
ଜାଙ୍ଗଳେ ସେ ଶାନ୍ତା ପ୍ରମଦା । ଯତିଙ୍କି ସେବା କଲେ ସଦା ।୫୪।
ଜନାରଦନ ରାମଙ୍କର । ଜନମ ଶୁଣ ଧୀର ନର ।୫୫।
ଯହୁଁ ଦଶମ ମାସ ହେଲା । ଯାତନା ପାଇଲେ କୌଶଲ୍ୟା ।୫୬।
ଜ୍ୟେଷ୍ଠା ଦିବସ ମାସ ଅନ୍ତେ । ଯେ ମାସ ତାର ପକ୍ଷ ପ୍ରାନ୍ତେ ।୫୭।
ଜୀବ ବାସରେ ନବ ଦିନେ । ଜନଙ୍କ ନଧଡ଼ି ଗଣନେ ।୫୮।
ଜଳବମ୍ଭଙ୍କୁ ପୁନର୍ବସୁ । ଯାଉଅଛନ୍ତି ନିଜ ବାସୁ ।୫୯।
ଜମା ହୋଇଣ ଗ୍ରହ ପଞ୍ଚେ । ଯୁଗରେ ରହିଛନ୍ତି ଉଚ୍ଚେ ।୬୦।
ଜଳଜ ବନ୍ଧୁ ପୁଣି ମେଷେ । ଯୁକତ ହୋଇଛନ୍ତି ତୋଷେ ।୬୧।

---

(୩୮) ଇଡ଼ୁ—ଢାଳନ୍ତେ । (୩୯) ଧାପେ—ଶୀଘ୍ର । (୪୧) ଜରାସ୍ଥାନ—ଦେବତା । (୪୩) ଜ୍ୱଳନ—ଅଗ୍ନି । (୪୫) ଜୁଇ—ଅଗ୍ନି ।

ଯେଉଁ ଏମନ୍ତ କାଳ ଶୁଦ୍ଧ । ଜାଣି କୌଶଲ୍ୟା ବାଳାସିଦ୍ଧ ।୬୨।
ଜଠରୁ ଶ୍ରୀପତିଙ୍କି ଭଲେ । ଜନମ କରି ବିଲୋକଲେ ।୬୩।
ଜମ୍ଭାରି ନୀଳମଣି ସମ । ଜାଜ୍ୱଲ୍ୟ ବିରାଜଇ ଶ୍ୟାମ ।୬୪।
ଜଳଜ ଗଦା ଅରିଦର । ଯୁତ ହୋଇଛି ଚାରିକର ।୬୫।
ଜ୍ୱଳନ ଜ୍ୱାଳ ପରକାର । ଜାଳିକା ଶୋଭା କଟିଭର ।୬୬।
କଣ୍ଠୁଣ୍ଟି ପଦ୍ମକୁ ଇକ୍ଷଣ । ଜୁଞ୍ଚରେ ବିଲୋକନ୍ତି ପୁଣ ।୬୭।
ଯାମିନୀ ଶେଷ ପୂର୍ବଭାଗ । କଣ୍ଠୁଣ୍ଟି ଅଧରର ରଙ୍ଗ ।୬୮।
ଜାମ୍ବୁନଦାଦି ମୋତିମାଳା । ଯତନେ ଲମ୍ବି ଅଛି ଗଳା ।୬୯।
ଯୁଗଳ ଚରଣେ ନୂପୁର । କ୍ୱଣେ ସେ ନାଦେ ହଂସ ସ୍ୱର ।୭୦।
କହ୍ଲଗ ସମ ବାହୁ ବେନି । ଜାନୁଉଲଠ ରମ୍ଭାଜିଣି ।୭୧।
ଜନାରଦନଙ୍କୁ ଏ ରୂପେ । ଜନନୀ ଦେଖିକରି ଆପେ ।୭୨।
ଯୋଡ଼ି ମସ୍ତକେ ବେନିପାଣି । ଜଣା କଲେ ଏ ରୂପେ ବାଣୀ ।୭୩।
ଜାତରେ ଅଟେ ମୁଁ ଯୁବତୀ । ଜାଣିମି କେଉଁ ରୂପେ ସ୍ତୁତି ।୭୪।
ଯେବେ ସୁଦୟା ମୋରଠାର । ଯେବେ ସଂହର ଏ ଶରୀର ।୭୫।
ଜନ ବାଳକ ପରି ହୋଇ । ଜଞ୍ଜାଳ କର ଲକ୍ଷ୍ମୀସାଇଁ ।୭୬।
ଜଗଦୀଶ୍ୱର ତାହା ଶୁଣି । ଜୁଷ୍ଟରେ କହିଲେ ସେ କ୍ଷଣି ।୭୭।
ଜରାସ୍ଥାନଙ୍କ ହିତାର୍ଥରେ । ଜନ୍ମିଲି ତୁମ୍ଭର ଉଦରେ ।୭୮।
ଜାଙ୍ଗଳେ କରିଣ ସଞ୍ଚାର । ଯୁଦ୍ଧେ ନାଶିବ ଦଶଶିର ।୭୯।
ଜଳଧି ତନୟାଙ୍କ ନାହା । ଜନନୀ ଆଗେ କହି ଏହା ।୮୦।
ଜଗତ ରଖିବାକୁ ମାୟା । ଯତ୍ନେ ଧଇଲେ ଶିଶୁକାୟା ।୮୧।
ଯୁଗଳ ପଦବ୍ଲଳ ପୁଣ । ଜନମୋହନେ କଲେ ସ୍ତନ ।୮୨।
ଯୁଧାଜିତଙ୍କ ଯେଉଁ ଭଗ୍ନୀ । ଯାତନା ସେହି ପାଇ ପୁଣି ।୮୩।
ଜୀମୂତ ଶ୍ୟାମଙ୍କ ସଦୃଶ । ଜନମ କଲେ ଏକ ଶିଷ୍ୟ ।୮୪।
ଜାତ ରୂପର ପରି ଦେହ । ଜିତଇ କମଳକୁ ମୁହଁ ।୮୫।
ଯେଉଁ ସୁମିତ୍ରା ଏହି ମତ । ଜନ୍ମ କଲେ ସେ ବେନି ସୁତ ।୮୬।
ଜନମୋଦ୍ରବ ହୁତଙ୍କର । ଜାଣନ୍ତେ ଅଜଙ୍କ କୁମର ।୮୭।
ଯତି ଭୂପତି ବଶିଷ୍ଠଙ୍କୁ । ଯୁକ୍ତରେ ଡ଼କାଇ ପାଶକୁ ।୮୮।

---

(୬୪) ଜମ୍ଭାରି—ଇନ୍ଦ୍ର । (୭୯) ଜାଙ୍ଗଳେ—ବଣରେ ।
(୮୮) ଯୁକ୍ତରେ—ଯୁକ୍ତି ସହକାରେ, ସମ୍ମାନର ସହିତ ।

ଜାଇ ଜାତକ ଆଦିବିଧି । ଯେତେ ତା କରାଇଲେ ସିଦ୍ଧି ।୮୯।
ଜଗଣ୍ଣଦେବଙ୍କୁ ଡ଼କାଇ । ଯାଚଣ ଦେଲେ ରତ୍ନ ଗାଈ ।୯୦।
ସିବାରୁ ଧନ ଏକବଂଶ । ଜଳଜ ଆସନଙ୍କ ଶିଷ୍ୟ ।୯୧।
ଜ୍ୟେଷ୍ଠ ଶିଷ୍ୟଙ୍କ ଦେଲେ ନାମ । ଯତ୍ତଙ୍କ ଅଚ୍ଚନ୍ତ ଏ ରମ୍ୟ ।୯୨।
ଜଗତେ ଥିବା ମାନବାଳ । ଜ୍ଞାଣନ୍ତୁ ଏଣୁ ରାମ ବୋଲି ।୯୩।
ଯୁଧାଜିତଙ୍କ ଭଣଜାକୁ । ଯତନେ କରି ଭୂଷଣକୁ ।୯୪।
ଜନଙ୍କୁ କରିବେ ଭୂଷଣ । ଜାଣିଣ ଦେଲେ ଭରତ ନାମ ।୯୫।
ଯାମଳ ସ୍ୱର୍ଣ୍ଣବର୍ଣ୍ଣ ବନ୍ଧୁ । ଜନ୍ମି ଥିଲେ ତ ଭାଇ ଦୁଇ ।୯୬।
ଯୁକତ ହେବାରୁ ଲକ୍ଷଣ । ଜ୍ୟେଷ୍ଠଙ୍କୁ ବୋଇଲେ ଲକ୍ଷ୍ମଣ ।୯୭।
ଜିଣିମେ ବୋଲି ଶତ୍ରୁଜନ । ଜଘନ୍ୟଜଙ୍କୁ ଶତ୍ରୁଘନ ।୯୮।
ଜଇବାତୃକ ଅନ୍ୟପକ୍ଷେ । ଯେହ୍ନେ ବଢ଼ନ୍ତ ଶୁକ୍ଳପକ୍ଷେ ।୯୯।
ଯବାପୁ ସଜ୍ଜିତେ ଶ୍ରୀରାମ । ଜାଣ ବଢ଼ିଲେ ସେ ସମାନ ।୧୦୦।
ଯହୁଁ ଅଠର ମାସ ହେଲା । ଜନ୍ମେ ଗୁଳିଲେ ଗୁଳିପିଲା ।୧୦୧।
ଯୁଗ୍ମ ବରଷ ଶେଷ ହୋନ୍ତେ । ଜନବାସବ ତୋଷ ଶାନ୍ତେ ।୧୦୨।
ଯତିପତିଙ୍କ କରେ ଭଲେ । ଯୋଗେ ଶ୍ରବଣ ବନ୍ଧାଇଲେ ।୧୦୩।
ଜାମ୍ବୁନଦର ଲୁକ କରି । ଯୁଗଳ କର୍ଣ୍ଣେ ଦେଲେ ଭରି ।୧୦୪।
ଜିର ଅପୂର୍ବେ ରଘୁବଳା । ଜମି ଭାଇଙ୍କ କରି ଖେଳା ।୧୦୫।
ଜନକ ଜନନୀଙ୍କ ମତି । ନଡ଼ାଇ ଦେଲେ ସୁଖେ ଅତି ।୧୦୬।
ଜାଉ ଭକତ ରାମ ଯତି । ଜପି ସେ ରାମ ପଦ ନିତି ।୧୦୭।
ଯମରେ ହୋଇବାକୁ ସ୍ମୃତ । ଜଳପେ ରାମ କଥାମୃତ ।୧୦୮।

ଇତିଶ୍ରୀ ଜାନକୀଶ ବିଳାସ ରାମାୟଣେ ଶିବଶିବା ସମ୍ବାଦେ
ଆଦିକାଣ୍ଡେ ନାମ ତୃତୀୟୋଽଧ୍ୟାୟଃ



---

(୯୮) ଜଘନ୍ୟଜ—କନିଷ୍ଠ । (୯୯) ଜଇବାତୃକ, ଜୈବାତୃକ—ଚନ୍ଦ୍ର ।
(୧୦୪) ଲୁକ—କର୍ଣ୍ଣାଳଂକାର ବିଶେଷ । (୧୦୫) ଜିର ଅପୂର୍ବେ—ଅଜିରରେ, ଅଗଣାରେ ।

# ଚତୁର୍ଥ ଅଧ୍ୟାୟ

## ଜୟନ୍ତ ଉବାଚ

ଜୟନ୍ତ ହୋଇ ତୋଷମତି । ଜୟନ୍ତୀ କଣ୍ଠରେ କହନ୍ତି ।୧।
ଯାହେ ପଞ୍ଚମ ସମ୍ବତ୍ସର । ଯେ ଦଶରଥ ନରବର ।୨।
ଯୁଦ୍ଧବିଦ୍ୟାଦି ପାଠମାନ । ଜାଣି ହେବାକୁ ଯତ୍ନବାନ ।୩।
ଯେଉଁ ବଶିଷ୍ଠ ମୁନିପାଇଁ । ଜଘନେ ତାଙ୍କ ଦେଲେ ନେଇ ।୪।
ଜଠରଲମ୍ବ ପୂଜା କରି । ଜ୍ୟେଷ୍ଠେ ପଢ଼ିଲେ ଭାଇ ଚାରି ।୫।
ଜମ୍ବାଳଜାକ୍ଷ ରାମଚନ୍ଦ୍ର । ଯାବନ୍ତ ଶାସ୍ତ୍ରେ ହେଲେ ବିଦ୍ୟ ।୬।
ଯା ଦାସୀ ଅଟନ୍ତି ଶାରଦା । ଜାତକ ତାଙ୍କୁ ବେଦବିଦ୍ୟା ।୭।
ଜାତକ ବଚନ ହୋଇ ହର୍ଷ । ଜାଣି ପୁତ୍ରଙ୍କ ସାତ ବର୍ଷ ।୮।
ଜ୍ୟାଦେବଙ୍କରେ ହୋଇ ଯୁକ୍ତ । ଯୋଗ ବୁଝାଇ କଲେ ବ୍ରତ ।୯।
ଜୀମୂତ ଶ୍ୟାମରାମ ପ୍ରୀତେ । ଯୁକ୍ତ ହୋଇଣ ତିନି ଭ୍ରାତେ ।୧୦।
ଜନସ୍ତେ ରକ୍ଷଣ ବଢ଼ିଲେ । ଯୁବା କନ୍ଦର୍ପ ସମ ତୁଲ୍ୟ ।୧୧।
ଯୁଗ୍ମ ଚତୁର ବର୍ଷ ଶେଷେ । ଯା ହେଲା ଶୁଣ ଜନେ ତୋଷେ ।୧୨।
ଜାହ୍ନବୀ ତୀରେ କଉଶିକ । ଜମାଇ ସମ୍ଭାର ଅନେକ ।୧୩।
ଜରାହ୍ନିନାଦ ସ୍ୱପିତୃଙ୍କୁ । ଯାଗରେ ଶ୍ରାଗ (?) କରିବାକୁ ।୧୪।
ଜ୍ୱଳନ କୁଣ୍ଡ ମଧ୍ୟେ ସ୍ଥାପି । ଜୁହୁରେ ଇଡ଼ନ୍ତେ ସର୍ପି ।୧୫।
ଜମିଣ ଅନେକ ଅସୁର । ଯଜ୍ଞ କରନ୍ତେ ନାରଖାର ।୧୬।
ଯୋଗରେ ରାମ ବିଷ୍ଣୁ ଜାତ । ଜାଣି ଦୁର୍ଜ୍ଞସ୍ୱ ଲୋକ ତାତ ।୧୭।
ଜନ୍ମାଇ ମୋଦ ହୃଦୟରେ । ଯାଇ ମିଳଲେ ଅଯୋଧ୍ୟାରେ ।୧୮।
ଯତି ଆଗମ ଶୁଣି ରାଜା । ଯୁକତ କଲେ ହର୍ଷେ ମନ୍ତ୍ରା ।୧୯।
ଜାବାଳି ବଶିଷ୍ଠ ଏ ବେନି । ଯତିଙ୍କି ସଙ୍ଗତରେ ଘେନି ।୨୦।
ଯାହା କରିଣ ପଦଯୁଗେ । ଜଟିଳ ପାଶେ ହେଲେ ବେଗେ ।୨୧।

---

(୫) ଜଠର ଲମ୍ବ—ଗଣପତି । (୮) ଜାତକ—ପିତା । (୯) ଜ୍ୟାଦେବ—ବ୍ରାହ୍ମଣ । (୧୩) ଜମାଇ—ରୁଣ୍ଡକରି । (୧୫) ଜୁହୁ—ଅଗ୍ନି, ସର୍ପି—ଘୃତ । (୧୭) ଦୁର୍ଜ୍ଞସ୍ୱ ଲୋକତାତ—ଦ୍ୱିଜସ୍ୱ ବ୍ରହ୍ମା ।

ଜହ୍ନାର ସାଷ୍ଟାଙ୍ଗରେ କର । ଜଳରେ ଧୋଇଲେ ଅଙ୍ଘ୍ରି ଶ ।୨୨।
ଜନ୍ମିଲେ ସଦନରେ ଆମ୍ଭ । ଯାହା ପଡ଼ିଲେ ପଦ ଭୂମ୍ଭ ।୨୩।
ଜଗତ ସପ୍ତେ ଏଥୁ ବଳ । ଯଶ ଅର୍ଜିବ କସ ବୋଲି ।୨୪।
ଜଘନେ ତାହାଙ୍କୁ ଚଲାଇ । ଜନାଶ୍ରୟରେ ହେଲେ ଯାଇ ।୨୫।
ଜଆଦ ଚର୍ମେ ବସାଇଲେ । ହୋଡ଼ ହସ୍ତଂକୁ ସ୍ଥିତ ହେଲେ ।୨୬।
ଜନପାଳନ ରାଜମାତ୍ର । ଯତ୍ତ ପୃଛନ୍ତେ ବହୁ ପ୍ରୀତି ।୨୭।
ଜାତକଙ୍କର କଷ୍ଟାକଷ୍ଟ । ଯାବନ୍ତ କହିଲେ ବଶିଷ୍ଠ ।୨୮।
ଜ୍ୟାପାଳ ସେ ଅନ୍ତେ ଆନନ୍ଦେ । ଜଣା କଲେ ଏ ଗିର ମନ୍ଦେ ।୨୯।
ଯୋଗଂଧାନକୁ ତେଜ ଦେଇ । ଯୋଗି ହେ ଅଇଲ କମ୍ପାଇ ।୩୦।
ଯେବେ ମୁଁ ଅଟେ ଭୂମ୍ଭ ଭୃତ୍ୟ । ଯଥାର୍ଥ କହ ତପୋବନ୍ତ ।୩୧।
ଜଟିଳ ଶାର୍ଦ୍ଧୂଳ ତା ଶୁଣି । ଜଳ୍ପନ୍ତ ଶୁଣ ନରମଣି ।୩୨।
ଜମା କରଣ ତପୋଧନ । ଯାଗ କରନ୍ତେ ସିଦ୍ଧବନ ।୩୩।
ଜଗତ ହନ୍ତା ସୁନ୍ଦବାଳୀ । ଜାତୁଧାନଙ୍କ ସଙ୍ଗେ ମିଳି ।୩୪।
ଜବେ ବରଷି ରକ୍ତମାଂସ । ଯଜ୍ଞକୁ କରୁଅଛି ନାଶ ।୩୫।
ଜ୍ୟେଷ୍ଠ ସୁତଙ୍କୁ ଦିଅ ତବ । ଯାଇ ସେ ରଖିବେ ସେ ଯାଗ ।୩୬।
ଜନାର୍ଦ୍ଦନ ତ ସେ ସାକ୍ଷାତେ । ଜନ୍ମିଲେ ଦେବଙ୍କର ହିତେ ।୩୭।
ଯୁଦ୍ଧେ ସହାର ଦୁଷ୍ଟ ସୁର । ଜାଣ ହରିବେ ମହୀଭାର ।୩୮।
ଯାହାଙ୍କ ନାମ ଅଟେ ରାମ । ଜାତୁଧାନଙ୍କ ସେଟି ଯମ ।୩୯।
ଜବଗେ ଛେଦ ଦୈତ୍ୟ ଶିର । ଯଜ୍ଞ ସେ ରଖିବେ ମୋହର ।୪୦।
ଜବନେ ଶ୍ରୀରାମଙ୍କୁ ଦିଅ । ଜବନ୍ମ ହେଲେ ଶୁଣି ରାୟୁ ।୪୧।
ଜାଣିବା ବିଶ୍ୱାମିତ୍ର ମତ୍ତ । ଜଳ୍ପିଲେ ଶୁଣ ନରପତି ।୪୨।
ଯେବେ ନଦେବ ମତେ ରାମ । ଜାଳିବ କୋପାନଳେ ଗ୍ରାମ ।୪୩।
ଯତିଙ୍କ ଅମର୍ଷକୁ ଡ଼ରି । ସେ ଦଶରଥ ଦଣ୍ଡଧାରୀ ।୪୪।
ଜ୍ୟେଷ୍ଠ ସୁତଙ୍କୁ ଆଣି ବେଗେ । ଯାଅ ବୋଇଲେ ମୁନି ସଙ୍ଗେ ।୪୫।
ଜନକ ବାକ୍ୟ ଶୁଣି ରାମ । ସିବ ବୋଇଲେ ବହୁ ପ୍ରେମ ।୪୬।
ଜନନୀ ଆଗେ ମିଳି ପୁଣି । ଜଣାଇଁ ହୋଇଲେ ମେଲାଣି ।୪୭।
ଯତନେ ତହୁଁ ଅଳଂକାର । ଯୁକତ କଲେ କଳେବର ।୪୮।

---

(୩୪) ଜାତୁଧାନ—ରାକ୍ଷସ । (୪୦) ଜବଗେ—ଶୀଘ୍ର ଯାଇ ।
(୪୪) ଅମର୍ଷ—କ୍ରୋଧ ।

ଜର କାର୍ମୁକ ଧରି କରେ । ଜନୟୁ ବାହାର ସଭାରେ ।୪୯।
ଜ୍ୟେଷ୍ଠ ନନ୍ଦନ ସୁମିତ୍ରାଙ୍କ । ଯୁଗଳ ଡ଼ୋଳରୁ ଲୋତକ ।୫୦।
ଜଳକୁ ବୁହାଇ ସେ କାଳେ । ଜଣାନ୍ତି ରାମଙ୍କୁ ଶକଳେ ।୫୧।
ଯେବେ ଏଠାରେ ଗୁଡ଼ ମୋଟେ । ଯିବ ସେ ଯତିଙ୍କ ସଙ୍ଗତେ ।୫୨।
ଜୀବେ ମୁଁ ନ ରଖିବ ଆଶଃ । ଜାଣ ହେ ରାମ ମହାଯଶା ।୫୩।
ଜୀମୂତ ଶ୍ୟାମ ତାହା ଶୁଣି । ଜଘନ୍ୟଜଙ୍କ ଧରି ପାଣି ।୫୪।
ଜୂଷରେ କହିଲେ ଏ ଭାଷ । ଯିବା ସୁବେଶ ହୋଇ ଆସ ।୫୫।
ଯାଇ ଲକ୍ଷ୍ମଣ ବୀର ହରି । ଜୁହାର ଜନମାଙ୍କି କରି ।୫୬।
ଜ୍ୟେଷ୍ଠ ଭାଇଙ୍କ ସଙ୍ଗେ ମୁହିଁ । ଯାଉଛୁ ବୋଲି କରି କହି ।୫୭।
ଜ୍ୟାଧର ଶର ଧରି ସ୍କନ୍ଧେ । ଯାହାକୁ କଲେ ରାମ ପଛେ ।୫୮।
ଯୋଗୀଙ୍କି ରଘବ ଅନାଇଁ । ଜଳ୍ପିଲେ ଶୂଳ ହେ ଗୋସାଇଁ ।୫୯।
ଜଗତ ତାତ ବେନି ଯତି । ଜାଣି ରାମଙ୍କ ଶୁଦ୍ଧମତି ।୬୦।
ଜାଉଁଳ ଧରି ବାମ ସ୍କନ୍ଧେ । ଯିବାକୁ ବାହାରିଲେ ମନ୍ଦେ ।୬୧।
ଯୂତରେ ରାମ ସଉମିତ୍ରି । ଯତିଙ୍କ ପଛେ କଲେ ଗତି ।୬୨।
ଜଳଜାସନଙ୍କର ପୃଷ୍ଠେ । ଜନାରଦନ ହରି ହୃଷ୍ଟେ ।୬୩।
ଯିବାର ପରି ସେ କାଳରେ । ଜନେ ମଣିଲେ ମାନସରେ ।୬୪।
ଯାନ୍ତେ ମାର୍ଗକୁ କଣ୍ଠୁ ଋଷି । ଜ୍ୟାରୁହ ମୂଲ୍ଟିକେ ବସି ।୬୫।
ଜଳଦଜତ ବରନଙ୍କୁ । ଯତନେ କରି ଆଶ୍ଳେଷଙ୍କୁ ।୬୬।
ଯୋ ବିଦ୍ୟା ବଳା ଅତିବଳା । ଯାଚଣ ଦେଲେ ଗୁଡ଼ ହେଲା ।୬୭।
ଯାମିନୀ ହୁଅନ୍ତେ ସେ କାଳ । ଯଥୋକ୍ତେ ସନ୍ଧ୍ୟା ସାରି ଜଳ ।୬୮।
ଜଆଦ ଗୁଳ ପାଡ଼ି ତଳେ । ଜଟିଳ ବର ନିଦ୍ରା କଲେ ।୬୯।
ଜୂଷ୍ଟ ମନରେ ଭାଳି ଦୁଇ । ଜବଗ ଗୃପ କରେ ବହି ।୭୦।
ଯୁଗଳ ପାଶେ ସେ ଯତିଙ୍କ । ଜଗିଲେ ହୋଇ ଜାଗରୂକ ।୭୧।
ଜଷ୍ଣୁ ଦଗରେ ସେଥୁ ଅନ୍ତେ । ଯନ୍ତା ରବିଙ୍କ ପ୍ରକାଶନ୍ତେ ।୭୨।
ଜାଣି ଶଯ୍ୟକୁ ଉଠି ଋଷି । ଜଳରେ ସ୍ନାନ କଲେ ମଣି ।୭୩।
ଯେତେକ ଜିଷ୍ଟ୍ୟାଗୁର ମାନ । ଯୁକତେ କଲେ ସମାପନ ।୭୪।
ଯାହାକୁ କରଣ ସେ ଅନ୍ତେ । ଯୋଜନେ ପଥ ବହିଯାନ୍ତେ ।୭୫।

---

(୫୮) ଜ୍ୟାଧର—ଧନୁ । (୭୦) ଜବଗ – ଶର ।
(୭୨) ଜଷ୍ଣୁ ଦଗ—ପୂର୍ବ ଦଗ ।

ଯା ନାମ ସରଯୂ ବିଖ୍ୟାତ । ଜନଙ୍କୁ କରନ୍ତି ମୁକତ ।୭୬।
ଜଗତେଶ୍ୱର ରାମ ତାଙ୍କୁ । ଜ୍ୟୋଷ୍ଠରେ କରି ଲୋକନକୁ ।୭୭।
ଯାଜକେ ପୁଚ୍ଛିଲେ ଏ ଋଷି । ଜମ୍ବାଳିନୀଙ୍କ ନାମ କିସ ।୭୮।
ଜାଣିଥିଲେ ମୋ ପୁରତରେ । ଯନ୍ତ ହେବ କହ ସତ୍ୱରରେ ।୭୯।
ଯୋଗୀରାଜନ ତାହା ଶୁଣି । ଯତନେ କହିଲେ ଏ ବାଣୀ ।୮୦।
ଯୁଗ ଆଦ୍ୟର ଏ ବାରତା । ଜମ୍ବୁ ପର୍ବତ ଶିଖେ ଧାତା ।୮୧।
ଜାତ ଶତ୍ରୁରୁ କଲେ ସର । ଯା ନାମ ମାନସରୋବର ।୮୨।
ଜଳ ଉଥୁଳି ତହୁଁ ନିତ୍ୟ । ଜଆରେ ବହି ଏ ଆସନ୍ତି ।୮୩।
ଜଗତେ ସରଯୂ ବୋଲିଣ । ଜଣା ଏ ହୋଉଛନ୍ତି ପୁଣ ।୮୪।
ଯନ୍ତ ଭରଣ୍ଡ ରାମ ଶୁଣି । ଜଳ ସିଞ୍ଚିଲେ ଶିରେ ଆଣି ।୮୫।
ଜାତ ତ ହୋଇଥିଲା ଶୋଷ । ପିବାକୁ କଲେ ମଧ ଗ୍ରାସ ।୮୬।
• ଜାଲିଆମାନେ ନାବ ବାନ୍ଧି । ଜଗି ତ ଥିଲେ କୂଳ ରୁନ୍ଧି ।୮୭।
ଜଣକ ନାବେ ବସିକରି । ଜାଣ ତକ୍ଷଣେ ହେଲେ ପାରି ।୮୮।
ଯଥାର୍ଥ ମୂଲ୍ୟ ଦେଇ ତାଙ୍କୁ । ଜାଙ୍ଗଲେ କଲେ ଗମନକୁ ।୮୯।
ଜଳଜବନ୍ଧୁ ମଧ କାଳେ । ଯାଇ ବିପୁଳ ବନେ ହେଲେ ।୯୦।
ଜାଣିମାପାରେ ବନ ନାମ । ମନ୍ତିଙ୍କି ପୁଚ୍ଛିଲେ ଶ୍ରୀରାମ ।୯୧।
ଯୋଗୀ କହିଲେ ଆହେ ବାଳ । ଜାଙ୍ଗଲ ନାମଟି ବିପୁଳ ।୯୨।
ଜମ୍ଭାରି ବିଶ୍ୱାସେ ନମୁଚି । ଯାତୁଧାନଙ୍କୁ ଦୋଷ ପାଞ୍ଚି ।୯୩।
ଯୁଦ୍ଧରେ କରିବାରୁ ନାଶ । ଜାଜୁଲ୍ୟ ଦେହୁ ହେଲା ଧ୍ୱଂସ ।୯୪।
ଯୁକତ ତହୁଁ ଭଏ ହୋଇ । ଯଶ ସମ୍ପତ୍ତି ତେଜି ଦେଇ ।୯୫।
ଯାମିନୀ ତିନ ଏଥି ରହୁ । ଜାଣ ତରିଲେ ପାପୁ ସେହୁ ।୯୬।
ଯୁଗ୍ମ ପଞ୍ଚମ ଶତନେତ୍ର । ଯହୁଁ ହୋଇଲେ ପୁଣ୍ୟ ଗାତ୍ର ।୯୭।
ଜଗତେ ବିପୁଳ ବୋଲିଣ । ଜାଙ୍ଗଲ ନାମ ଖ୍ୟାତ ପୁଣ ।୯୮।
ଯତ୍ତଭୂପନ୍ତ ଏତେ ପ୍ରୀତେ । ଜୃମ୍ଭରେ କହି ରାମାଗ୍ରତେ ।୯୯।
ଯମୁନାଭ୍ରାତଙ୍କର ତେଜେ । ଯାତନା ପାଇ ହେଲେ ବଜେ ।୧୦୦।
ଜେମନ କରି ଫଳମୂଳ । ଜାଣି ସୁରଙ୍କ ଜରକାଳ ।୧୦୧।
ଯାଇ ସେଠାରୁ ତିନ ଜଣ । କିଣିଲେ ବାଟ ତିନ ପୁଣ ।୧୦୨।

---

(୭୮) ଯାଜକ—ଋଷି, ଜମ୍ବାଳିନୀ—ନଦୀ । (୯୫) ଭଏ—ଭୟ ।
(୧୦୧) ଜରକାଳ—ଅସ୍ତ ସମୟ ।

ଯାମିନୀ ହୁଅନ୍ତେ ତପ କାଳ । ଜ୍ୟେଷ୍ଠ କୌଶିକ ତପଶୀଳ ।୧୦୩।
ଜମ୍ବୁ ପାଦପ ମୂଳେ ବସି । ଜପିଲେ ମନ୍ତ୍ରରାଜ ଋଷି ।୧୦୪।
ଜ୍ୟୋତ ନଦ୍ୟାରେ ଓହ୍ଲାନ୍ତେ ବୁଜ । ଜ୍ୟାଟରେ ଶୋଇଲେ ସୁଖେ ମଜ୍ଜି ।୧୦୫।
ଜ୍ୟୋତ୍ସ୍ନା ଶେଷରେ ଉଠି ଋଷି । ଜଳରେ ନିତ୍ୟକର୍ମ ଶେଷି ।୧୦୬।
ଯାତ୍ରା କରଣ ତାଡ଼କାର । ଜାଙ୍ଗଲେ ମିଳିଲେ ସତ୍ୱର ।୧୦୭।
ଜପି ସେ ଯତି ରାମ ପାଦ । ଜଳପେ ଭକ୍ତରାମ ମନ୍ଦ ।୧୦୮।

ଇତିଶ୍ରୀ ଜାନକୀଶ ବିଳାସ ରାମାୟଣେ ଶିବଶିବା ସମ୍ବାଦେ ଆଦିକାଣ୍ଡେ
ନାମ ଚତୁର୍ଥ ଅଧ୍ୟାୟଃ

## ପଞ୍ଚମ ଅଧ୍ୟାୟ

ଜଟାଧାରୀ ଉବାଚ

ଜାନୁରେ ଗଉରାଂକ ଧର । ଜ୍ୟେଷ୍ଠ କହନ୍ତି ଜଟାଧାରୀ ।୧।
ଯୋଗୀ ରାମଙ୍କ ମୁଖ ଚୁମ୍ବି । ଜଳ୍ପିଲେ ଶୁଣ ନୀଳ ଦେହି ।୨।
ଜନନୀ ମାରଚର ଏଥି । ଜାଳକେ ଅଛି କୋପେ ତାତି ।୩।
ଯାଗ ମୋହର ତା ବଚନ । ଯାଇ ନାଶନ୍ତି ଯାତୁଧାନେ ।୪।
ଜୀମୂତ ଶ୍ୟାମ ତାହା ଶୁଣି । ଜ୍ୟା ରୂପେ ଦେଇ ଧରି ପୁଣି ।୫।
ଯତିଙ୍କି କହିଲେ ଏପରି । ଯେବେ ଆସିବ ନିଶାଚରୀ ।୬।
ଜୀବ ହାରିବ ମୋ ସାୟକେ । ଯୁତକ ନାହିଁ ଏଥି ଠିକେ ।୭।
ଜାଡି ନକର ଏବେ ଭ୍ରାନ୍ତି । ଜୁତରେ କର ତୁମ୍ଭେ ଗତି ।୮।
ଜ୍ୟେଷ୍ଠଦେବଙ୍କ ହତେ ମୁହିଁ । ଜନ୍ମ ତ ହୋଇଅଛି ମହୀ ।୯।
ଜାତୁରେ ନାହିଁ ମୋର ଭୟ । ଯାତୁକୀ କରିଦେବି କ୍ଷୟ ।୧୦।
ଜଳଜେକ୍ଷଣ ରାମ ଏତେ । ଜଳପି ତପିଙ୍କ ପୁରତେ ।୧୧।
ଜ୍ୟାକୁ ଆକର୍ଣ୍ଣନ୍ତେ ଟାଣେ । ଜବେ ଟୂଣିଲ ଶବ୍ଦ ବଣେ ।୧୨।
ଯେଉଁ ତାଡ଼କା ଯାତୁଧାନୀ । ଜାଣି ଅଇଲା କରି ଧ୍ୱନି ।୧୩।
ଜ୍ୟେଷ୍ଠଦେବୀକି ଦେଖୁ ଯତି । ଜନ୍ମାଇ ଚିତ୍ତେ ଅତି ଭ୍ରାନ୍ତି ।୧୪।
ଜଳ୍ପିଲେ ରାମ ଆଗୁ ମାର । ଜୀବନ ନେଉଛି ମୋହର ।୧୫।
ଯୋଗିଙ୍କ ବଚନ ଶ୍ରବଣ । ଜୀମୂତ ଶ୍ୟାମ ନ ସହିଣ ।୧୬।

---

(୧୦) ଜାତୁ—କଦାଚିତ୍, ଯାତୁକୀ—ରାକ୍ଷସୀ। (୧୪) ଜ୍ୟେଷ୍ଠଦେବୀ—ରାକ୍ଷସୀ।

ଜଗତ ଦହଇ ଯୋ ଶ୍ରେପ । ଯୋଷ ବନ୍ଧିଲେ ଘେନ କୋପ ।୧୭।
ଯାଇ ସେ ଶର ତାଡ଼କାର । ଜଠରେ ପଡ଼ିଲା ସତ୍ୱର ।୧୮।
ଜଘନ୍ୟ ବିଦାରି ତା ପ୍ରାଣ । ଯମଙ୍କୁ କଲା ସମର୍ପଣ ।୧୯।
ଯାତୁଧାନୀର ଦେହୁ ପୁଣି । ଜ୍ୟୋତିଏ ବାହାରି ସେ କ୍ଷଣି ।୨୦।
ଜମ୍ବାଳଜାକ୍ଷ ରାମ ଅଙ୍ଗେ । ଯୁକ୍ତ ହେଲା ଆସି ବେଗେ ।୨୧।
ଜବଗ ଗଙ୍ଗାଜଳେ ପଶି । ଜମିଲା ରାମ ଭୁଜେ ଆସି ।୨୨।
ଜମ୍ଭାରି ଆଦି ସୁରଗଣ । ଜାଣନ୍ତେ ତାଡ଼କା ମରଣ ।୨୩।
ଜାତ୍ୟାଦି ପୁଷ୍ପ ବର୍ଷି ଭଲେ । ଜୟବାଣୀକ ଉଚ୍ଚାରିଲେ ।୨୪।
ଜାତେ କୌଶିକ ଋଷି ସାଇଁ । ଯତ୍ନେ ରାମଙ୍କୁ କୁଣ୍ଢାଇ ।୨୫।
ଯେତେକ ବିଦ୍ୟା ଜାଣିଥିଲେ । ଯାବନ୍ତ ବତାଇ କହିଲେ ।୨୬।
ଜାହ୍ନବୀ ତହୁଁ ପାରି ହୋଇ । ଜାଙ୍ଗଳ ସିଦ୍ଧେ ହେଲେ ଯାଇ ।୨୭।
ଯାଗ ସମ୍ଭାର ଭିଆଇଣ । ଜମାଇ ମୁନି ମୁନିଗଣ ।୨୮।
ଜୁହୁରେ ଭରି ଗୁଆ ଘୃତ । ଜ୍ୱଳନେ ଇଢ଼ିଲେ ତ୍ୱରିତ ।୨୯।
ଜମ୍ବୁ ବୃନ୍ଦେ ସେ ବାସ ପାଇ । ଯେ ଯାହା ସ୍ଥାନୁ ଗଲେ ଧାଇଁ ।୩୦।
ଯତିଙ୍କି ଖାଇବା ବୋଲିଣ । ଜମିଲେ ତମୀ ହୋଇ ପୁଣ ।୩୧।
ଜନମା ଛଳରେ ମାରିଚ । ଯୁଣ ପର୍ଯ୍ୟନ୍ତେ ହୋଇ ଉଚ ।୩୨।
ଯାତୁଧାନଙ୍କ ସଙ୍ଗେ ହେଲେ । ଯାଇ ମିଳିଲେ ହୋମ ସ୍ଥଳେ ।୩୩।
ଜଳଧି ତରଙ୍ଗ ଶବଦ । ଯୋଖେ ଉଚ୍ଚରେ କଲେ ନାଦ ।୩୪।
ଜ୍ୟେଷ୍ଠଦେବଙ୍କୁ ଦେଖି ଯତି । ଜଳ୍ପିଲେ ଆହେ ରଘୁପତି ।୩୫।
ଯାଗ କରିବେ ନାରଖାର । ଜବଗେ ଏମାନଙ୍କୁ ମାର ।୩୬।
ଯତି ଭାରତୀ ଶୁଣି ରାମ । ଜହ୍ଲୁଗ ପ୍ରାଏ ହେଲେ ତମ ।୩୭।
ଯୋଚଣ ବାଣ ସିଞ୍ଜିନୀରେ । ଜଳ୍ପିଲେ ଆରେ ନିଶାଚରେ ।୩୮।
ଜୀବନ ଦେଇ ମୋ ବାଣକୁ । ଯିବ ବାହାରି କେଉଁଠାକୁ ।୩୯।
ଯୁଦ୍ଧେ ତୁମ୍ଭଙ୍କୁ ଦେଇ ଦୁଃଖ । ଯୋଗିଙ୍କ ରଖିବି ଏ ମଖ ।୪୦।
ଯେବେ ତୁମ୍ଭର ଅଛି ସଧ । ଜମି ମୋ ସଙ୍ଗେ କର ଯୁଦ୍ଧ ।୪୧।
ଜ୍ୟେଷ୍ଠ ଭ୍ରାତଙ୍କ ପରକାରେ । ଜ୍ୟାଧରି ଶର ଧରି କରେ ।୪୨।
ଜାତୁକେ ସୁମିତ୍ରା ଆତ୍ମଜ । ଯୁଦ୍ଧ କରଣେ ହେଲେ ସଜ ।୪୩।

---

(୧୭) ଶ୍ରେପ—ଶର । (୧୯) ଜଘନ୍ୟ— ଅଧମ । (୩୦) ଜମ୍ବୁ— ରାକ୍ଷସ ।
(୪୦) ମଖ—ଯାଗ ।

ଯୋଧା ମଣ୍ଡନ ରାମବାଣୀ । ଯାମିନୀଚରମାନେ ଶୁଣି ।୪୪।
ଯେ ଯାହା ଶସ୍ତ୍ର ଧରି କରେ । ଯୁଝିଲେ ରାମଙ୍କ ସଙ୍ଗରେ ।୪୫।
ଜ୍ୱଳନ ବାଣ ବିନ୍ଧି ରାମ । ଜାଳିଲେ ଦୈତ୍ୟ ତୃଣଗ୍ରାମ ।୪୬।
ଯୋଡ଼ିକ ବାଣେ ସୁବାହୁର । ଜୀବନ ଦେଲେ ଯମ କର ।୪୭।
ଜ୍ୟାଧରେ ବାତବାଣ ସନ୍ଧି । ଜବନେ ମାରିଚକୁ ବିନ୍ଧି ।୪୮।
ଯୋଜନ ଶତକରେ ନେଇ । ଜଳଧିଜଳେ ଦେଲେ ଥୋଇ ।୪୯।
ଜାତୁକେ ଲକ୍ଷ୍ମଣ ହର୍ଯ୍ୟକ୍ଷ । ଯାତୁଧାନଙ୍କ କରି ବକ୍ଷ ।୫୦।
ଜବର ମୂନ ନଖେ ଚିରି । ଜୀବ ମୁକୁତା ନେଲେ ଜ୍ରି ।୫୧।
ଯେତେ ନୈରୁତେ ଆଁଜ ଥିଲେ । ଯୁଝି ନପାରି ପଳାଇଲେ ।୫୨।
ଯତ୍ତଣ ଗାଧିଙ୍କ ନନ୍ଦନ । ଯାଗକୁ କଲେ ସମାପନ ।୫୩।
ଜବିବହ୍ନିନେ ଯେସ୍ୱି କାଳେ । ଜନ୍ମାଇ ମୋଦ ହୃଦସ୍ଥଳେ ।୫୪।
ଜାତି ମଲ୍ଲିକା ବରଡିଣ । ଜଗଣ୍ଠି ଯଣ୍ଠି କଲେ ପୃଷ୍ଠି ।୫୫।
ଜୟ ଷବଦ ମୁଖେ ଗାଇ । ଯେ ଯାହା ପୁରେ ହେଲେ ଯାଇ ।୫୬।
ଯେତେକ ଆସିଥିଲେ ଋଷି । ଜଳଦ ଶ୍ୟାମଙ୍କୁ ପ୍ରଶଂସି ।୫୭।
ଯାହାର ଆଶ୍ରମେ ସେ ମିଳି । ଜପିଲେ ହରିପଦ ଭାଳି ।୫୮।
ଜୀବାକ୍ଷ ଆଦ୍ୱ ସ୍ୱାଦ ଫଳ । ଜମାଇଁ ତହୁଁ ଗାଧିବାଳ ।୫୯।
ଯାଚନ୍ତେ ଶ୍ରୀରାମ ଲକ୍ଷ୍ମଣ । ଜୋଗଣ କଲେ ତତକ୍ଷଣ ।୬୦।
ଯାମିନୀ ତିନି ହୋନ୍ତେ ଶେଷ । ଯତି କହିଲେ ଏହି ଭାଷ ।୬୧।
ଜନକ ନୃପ ମିଥିଳାରେ । ଜାନକୀ ବିବାହ ଅର୍ଥରେ ।୬୨।
ଜନଇନଙ୍କୁ ଡ଼ାକି ଆଣି । ଜ୍ୟାଧର ଧରିଅନ୍ତି ପାଣି ।୬୩।
ଜନକ ବଡ଼ ଭାଗ୍ୟବନ୍ତ । ଜଗତେ ତାଙ୍କ ନାମ ଖ୍ୟାତ ।୬୪।
ଯୋଗୀ ପଣରେ ତାଙ୍କପରି । ଜଣେ ନଥିବେ ତିନି ପୁରି ।୬୫।
ଯାଗ ସେ ଦିନେ ଇଚ୍ଛି ମତି । ଯୋଚି ହଳକୁ ଚଷୁଛନ୍ତି ।୬୬।
ଜଳଜାଳୟାଙ୍କର ପ୍ରାଏ । ଜନ୍ମିଲେ ସୀତାରୁ ସୁତାଏ ।୬୭।
ଜାନକୀ ବୋଲି ତାଙ୍କୁ ନାମ । ଜାତକ ଦେଲେ ବହୁ ପ୍ରେମ ।୬୮।
ଯୌବନାବସ୍ଥା ହୋନ୍ତେ ଏବେ । ଯାଗ ଆରମ୍ଭିଛନ୍ତି ଭବେ ।୬୯।
ଯେବେ ସେଠାକୁ ଆମ୍ଭେ ଯିବା । ଯଜ୍ଞକୁ ଲୋଚନେ ଦେଖିବା ।୭୦।

---

(୫୦) ହର୍ଯ୍ୟକ୍ଷ—ସିଂହ, କରି—ହସ୍ତୀ । (୫୨) ନୈରୁତ—ରାକ୍ଷସ ।
(୬୦) ଯୋଗଣ---ଭୋଜନ ।

ଜମ୍ବୁଦ୍ୱୀପରେ ନରପତି । ଯେତେଛନ୍ତି ସେ ଆସିଛନ୍ତି ।୭୧।
ଯବାପୁ ଭୁଲେ ଭୁମ୍ଭେ ଦେଖି । ଯିବ ଅଯୋଧ୍ୟା ହୋଇ ସୁଖୀ ।୭୨।
ଜୀମୂତ ଶ୍ୟାମ ତାହା ଶୁଣି । ଜଣାଇଁଲେ ହେ ମୁନିମଣି ।୭୩।
ଯାଇ ଦେଖିବ ନୃପଗଣ । ଜୁଡ଼ିବରେ କର ପରସ୍ପାଣ ।୭୪।
ଜିତ ସୁନୀଳ ଘନ ଏତେ । ଜଳପି ତପିଙ୍କ ପୁରତେ ।୭୫।
ଯବାପୁ ଲକ୍ଷ୍ମଣଙ୍କ ଭୁଲେ । ଯିବା ନିମିତ୍ତେ ସଜ ହେଲେ ।୭୬।
ଯତି ତା ଦେଖି ଉଠି ବେଗେ । ଯାତ୍ରାକୁ କଲେ ବନ ଭାଗେ ।୭୭।
ଯୋଗୀଶ ଗୌତମ ଆଶ୍ରମେ । ଯାଇ ପ୍ରବେଶ ହେଲେ କ୍ରମେ ।୭୮।
ଜାତି ସହିତେ ପୁଷ୍ପପନ୍ତି । ଜନ୍ମାଜନ୍ତରେ ଫୁଟିଛନ୍ତି ।୭୯।
ଜନ୍ତୁଙ୍କ ହୋଇଅଛି ସ୍ଥାନ । ଜନଙ୍କ ପୁଣି ହରେ ମନ ।୮୦।
ଯେଉଁ ଆଶ୍ରମ ଏହୁ ରୂପେ । ଜମ୍ବାଳଜାକ୍ଷ ଦେଖି ଆପେ ।୮୧।
ଯତିଙ୍କି ପୁଚ୍ଛିଲେ ଏ ଭାବ । ଜାଗଳ ନାମ ଅଟେ କସ ।୮୨।
ଜଗତ କରତା ଦୁଷ୍ଟପୁ । ଜନ୍ମାଇଁ ସନ୍ତୋଷ ହୃଦୟୁ ।୮୩।
ଜଳଦ ଶ୍ୟାମଙ୍କୁ ଗୃହିଁଣ । ଜଳ୍ପନା କଲେ ଏ ବଚନ ।୮୪।
ଯୋଗିଏ ଗଉତମ ନାମେ । ଯୁଗାଦ୍ୟେ ଥିଲେ ଏ ଆଶ୍ରମେ ।୮୫।
ଯୋଷାଏ ଅହଲ୍ୟା ନାମେଣ । ଜାୟା ତାଙ୍କର ଥିଲେ ପୁଣ ।୮୬।
ଜିଷ୍ଣୁ ତା ସୌନ୍ଦର୍ଯ୍ୟକୁ ଦେଖି । ଜଟେଣ ଢିଷେ ହେଲେ ଦୁଃଖୀ ।୮୭।
ଯତିଙ୍କ ଛିଦ୍ର ଇଚ୍ଛି ଚିତ୍ତେ । ଜାଲକେ ଜଗିଥାନ୍ତି ନିତ୍ୟେ ।୮୮।
ଜମ୍ବାଳମାକ ଢନେ ମୁନି । ଯାନ୍ତେ ସ୍ନାନାର୍ଥେ ଲୋଟା ଘେନି ।୮୯।
ଜମ୍ଭାରି ତାଙ୍କ ରୂପେ ଆସି । ଯୋଷାଙ୍କୁ ରତି କଲେ ରସି ।୯୦।
ଯଥାବଧିରେ ଗଉତମ । ଜହ୍ନୁସୁତାରେ ସାରି ସ୍ନାନ ।୯୧।
ଜଳ କଳସ ଧରି କରେ । ଯାଇ ମିଳିଲେ ଆଶ୍ରମରେ ।୯୨।
ଜାଣି ତା ଇନ୍ଦ୍ର ଓତୁ ରୂପ । ଜଳାବାଟରେ ଗଲେ ଧାପେ ।୯୩।
ଯୋଗେ ତା ହେଜ ମହର୍ଷି । ଜବେ ଏ ଶାପ ଦେଲେ ରୋଷେ ।୯୪।
ଯୋନି ସହସ୍ର ଦେହେ ବହ । ଯେଣୁ ଭଗରେ କଲ ସ୍ନେହ ।୯୫।
ଜିଷ୍ଣୁ ଦେହରେ ଦଶ ଶତ । ଯୋନି ହୁଅନ୍ତେ ପରାପତ ।୯୬।
ଯୁକ୍ତ ହୋଇ ଯେ ଲଜ୍ଜା ଭରେ । ଯାଇ ଲୁଚିଲେ ମାନସରେ ।୯୭।

---

(୮୮) ଜାଲକ—ଗବାକ୍ଷ । । (୮୯) ଜମ୍ବାଳମାକ—ନଦୀକୁ ।
(୯୩) ଓତୁ—ବିରାଡ଼ି ।

ଜାଣି ଏ କଥା ଧାତା ଯୋଗେ । ଜବେ ମିଳାଲେ ମୁନି ଆଗେ ।୯୮।
ଜଣା କରନ୍ତେ ବହୁ ରୂପେ । ଜୂଷ ହୋଇ ସେ ଯନ୍ତ ଆପେ ।୯୯।
ଜଲ୍ପିଲେ ପୁରନ୍ଦର ଗାଧ । ଯୋନ ସହସ୍ରେ ହେଉ ନେତ୍ର ।୧୦୦।
ଜଳଜାସନ ତାହା ଶୁଣି । ଜୟନ୍ତଜନକଙ୍କୁ ଆଣି ।୧୦୧।
ଜ୍ୟୋତି କରାଇ ଯୋନି ଯାକ । ଯାଅ ବୋଲନ୍ତେ ପୁରନାକ ।୧୦୨।
ଜଟିଳେଶଙ୍କୁ ପୁରୁହୂତ । ଜୁହାର ହୋଇ ପାରଥିତ ।୧୦୩।
ଯାଉଛୁ ବୋଲିକରି କହି । ଯାଇ ମିଳିଲେ ସ୍ୱର୍ଗମହୀ ।୧୦୪।
ଯଶୋବନ୍ତୀକି ବ୍ରହ୍ମା ମଧ । ଯାତରା କଲେ ବହୁ ସଧ ।୧୦୫।
ଯୁଗଳ ପଦ ସେ ବ୍ରହ୍ମାଙ୍କ । ଜପିଣ ଦିବାନିଶି ଯାକ ।୧୦୬।
ଯାବନ୍ତ ପଦଙ୍କର ଆଦ୍ୟେ । ଜବର୍ଣ୍ଣ ରଖି ନାନା ଭେଦେ ।୧୦୭।
ଜାନକୀ ପତିଙ୍କର ଖ୍ୟାତି । ଜଳପେ ଭକ୍ତରାମ ଯତି ।୧୦୮।

ଇତିଶ୍ରୀ ଜାନକୀଶ ବିଳାସ ରାମାୟଣେ ଶିବଶିବା ସମ୍ବାଦେ ଆଦିକାଣ୍ଡେ
ନାମ ପଞ୍ଚମ ଅଧ୍ୟାୟ ।

---

## ଷଷ୍ଠ ଅଧ୍ୟାୟ

### ତ୍ରିପୁରାରି ଉବାଚ

ଜଗତ ହନ୍ତା ତ୍ରିପୁରାରି । ଜଳ୍ପନ୍ତି ଜାୟା ଆଗେ ସ୍ମରି ।୧।
ଜିଷ୍ଣୁଙ୍କୁ ଏ ରୂପରେ କରି । ଯାନ୍ତେ କୁଟୀକି ତପଚାରୀ ।୨।
ଯୋଡ଼ି ଅହଲ୍ୟା ବେନିକର । ଜଣା କଲେ ଏ ରୂପେ ଗିର ।୩।
ଯଥାର୍ଥ କହୁଅଛି ମୁହିଁ । ଜନ୍ମାରି ତୁମ୍ଭ ରୂପ ବହି ।୪।
ଜବେ ଧର୍ଷଣା କଲେ ମୋତେ । ଜାଣିଣ ଥିଲେ ମୁଁ କାହିଁତେ ।୫।
ଜଳଜ ପଦ ତୁମ୍ଭ ଛୁଇଁ । ଯମାଯମକୁ କରିବଇଁ ।୬।
ଯୁବତୀ କହି ଏହି ପଦ । ଜୁହାର କଲେ ଛୁଇଁ ପାଦ ।୭।
ଯତି ତ ବହିଥିଲେ କୋପ । ଜାୟାଙ୍କୁ ବହିଲେ ଏ ଶାପ ।୮।
ଯେଣୁ ତୁ ହେଲୁ ବେଶ୍ୟା ବାଳା । ଜବନେ ଏଣୁ ହୁଅ ଶୀଳା ।୯।
ଯୋଷା ପୃଚ୍ଛନ୍ତେ ଶାପ ଅନ୍ତ । ଯୋଗୀ କହିଲେ ହୋଇ ଶାନ୍ତ ।୧୦।

---

(୯୯) ଜଷ—ଆନନ୍ଦିତ । (୧୦୩) ପାରଥିତ—ପ୍ରାର୍ଥିତ ।
(୧୦୧) ଜୟନ୍ତଜନକ—ଇନ୍ଦ୍ର । (୧୦୨) ଜ୍ୟୋତି—ଚକ୍ଷୁ ।

ଜ୍ୟେଷ୍ଠଦେବଙ୍କ ହିତାର୍ଥରେ । ଜଗବନ୍ଦନଙ୍କ ହିତରେ ।୧୧।
ଜଗତେଶ୍ୱର ଲକ୍ଷ୍ମୀସାଇଁ । ଜନ୍ମିବେ ରାମ ରୂପ ବହି ।୧୨।
ଜୀବନ ହରି ରାକ୍ଷସଙ୍କ । ଯାଗ ରଖିବେ ଗାଧେୟଙ୍କ ।୧୩।
ଜଳଜପଦ ତାହାଙ୍କର । ଯେବେ ପଡ଼ିବ ତୋ ଉପର ।୧୪।
ଯତ୍ନେ ତୁ ତେବେ ହେବୁ ବାଳା । ଜାଣ ଅବଳା ରତ୍ନମାଳା ।୧୫।
ଜଡ଼କୁ ଆଦି ଷଡ଼ ଋତୁ । ଯାକ ସହିବୁ ନାସ୍ତି କେତୁ ।୧୬।
ଯାଉଛି ମୁହିଁ ହିମବନ୍ତ । ଯେବେ ତୁ ହେବୁ ଶାପ ମୁକ୍ତ ।୧୭।
ଜନାର୍ଦ୍ଦନଙ୍କୁ ତୋଷି ସ୍ତବେ । ଜବେ ମିଳିବୁ ମୋର ଠାବେ ।୧୮।
ଜଳପି ଏହା ପ୍ରିୟା ଆଗେ । ଯାଇ ସେ ହେଲେ ହିମନଗେ ।୧୯।
ଯୁବତୀ ଶୀଳା ହୋଇଛନ୍ତି । ଜାଣ ହେ ରାମ ଶ୍ୟାମକାନ୍ତି ।୨୦।
ଜଳଜପଦ ଦେଲେ ତୁମ୍ଭେ । ଯାବେଣ ଶାପୁ ପାର ହେବେ ।୨୧।
ଯତ୍ନେଣ ଏତେ ଋଷି ଭଣିଲେ । ଯାଇ ସେ ଶୀଳା ଦେଖାଇଲେ ।୨୨।
ଜ୍ୟଷରେ ରାମ ଦେଖୁସାଇଁ । ଜନ୍ମେ ଶ୍ରୀପଦ ଲେଦୁ ତହିଁ ।୨୩।
ଜମ୍ଭାରି ନାସ୍ତି ପରି ବାଳା । ଜଣେ ହୋଇଲେ ସେହି ଶୀଳା ।୨୪।
ଯୋଡ଼ି ମସ୍ତକେ ହସ୍ତ ବେନି । ଜଣା କଲେ ଯେ ସୁବଦନୀ ।୨୫।
ଜୟ ହେ ଜଗତକରତା । ଜୟ କମଳା ଦେବୀ ଭର୍ତ୍ତା ।୨୬।
ଜପିଲେ ହୃଦେ ଯାଙ୍କ ନାମ । ଜପ କରନ୍ତି ବହି ପ୍ରେମ ।୨୭।
ଯାମିନୀ ଦିବା ପଶୁପତି । ଯା ପଦ ବାରି ଧରିଛନ୍ତି ।୨୮।
ଯା ନାଭି ପଦ୍ମୁ ଜାତ ହୋଇ । ଜଗତ ସରଜିଲେ ବିଧି ।୨୯।
ଯା ଗୁଣ ଗାଇଣ ନାରଦ । ଯନ୍ତ୍ରକୁ କରନ୍ତି ଆହ୍ଲାଦ ।୩୦।
ଜମ୍ଭାରି ଆଦି ସୁର ବୃନ୍ଦେ । ଯା ହେଉଛନ୍ତି ସ୍ୱର୍ଗେ ମୋଦେ ।୩୧।
ଯା ଗିରେ ଲବଣକୁ ଆଦି । ଜଳଧି ଛନ୍ତି ନୋହିଁ ବୃଦ୍ଧି ।୩୨।
ଜୀବ ଛପନ କୋଟି ହୃଦେ । ଯୋଗେ ଯେ ଛନ୍ତି ଅପ୍ରମାଦେ ।୩୩।
ଯେଉଁ ଏମନ୍ତ ରାମ ହରି । ଯୁବା କନ୍ଦର୍ପ ଦର୍ପହାରୀ ।୩୪।
ଯାମିନୀ ଦିବା ତାଙ୍କୁ ମୋର । ଜୁହାର ଅଗଣିତ ବାର ।୩୫।
ଜୀମୂତ ଶ୍ୟାମ ଆଗେ ଏହା । ଜଳ୍ପି ସେ ବ୍ରହ୍ମାଙ୍କ ତନୟା ।୩୬।
ଯୋଡ଼ିଣ ବେନି କର ପଦ । ଜବଣୀ ହୋଇ ହେଲେ ସ୍ଥିତ ।୩୭।

---

(୧୯) ହିମନଗେ—ହିମାଳୟରେ । (୨୩) ଲେଦୁ—ଲଦବାରୁ ।
(୨୪) ଜମ୍ଭାରି ନାସ୍ତି—ଶଚୀ ।

ଯୁବତୀ ମୁକ୍ତ ରାମ ଶ୍ରୀ । ଜୁହାର କଲେ ଯୋଡ଼ ପାଣି ।୩୮।
ଜଳ୍ପିଲେ ଆଗେ ମହାନ୍ତ । ଯାଅ ତୁମ୍ଭର ପନ୍ଥ କନ୍ତ ।୩୯।
ଯଜ୍ଞାନ୍ତ ବେଦଧାତ୍ରୀ ସୁତା । ଯାନ୍ତେ ଭେଟିଲେ ନିଜ ଭର୍ତ୍ତା ।୪୦।
ଜାୟାଙ୍କୁ ଗଉତମ ଦେଖି । ଜଙ୍ଘେ ଧଇଲେ ହୋଇ ସୁଖୀ ।୪୧।
ଯେଉଁ ରୂପରେ ପୂର୍ବେ ଥିଲେ । ଜାଗିଲେ ସେ ରୂପେ ରହିଲେ ।୪୨।
ଜୟନ୍ତ କହନ୍ତି ଏ ଅନ୍ତେ । ଯନ୍ତ କୌଶିକ ତହୁଁ ପ୍ରୀତେ ।୪୩।
ଯୁଗ୍ମ ରାଘବ ସହିତରେ । ଯାଇଁ ମିଳିଲେ ଗଙ୍ଗା ତୀରେ ।୪୪।
ଜାହ୍ନବୀ ନଦୀ ଦେଖି ରାମ । ଯୋଗୀଙ୍କି ପୁଚ୍ଛିଲେ ଏଯନ ।୪୫।
ଜନମ କେ। ସ୍ଥାନୁ ଏ ନଦୀ । ଜଳ ରଜତ ଦିଏ ନିଧି ।୪୬।
ଜାହ୍ନବୀ ବୋଲି ମୁନିମଣି । ଜଳ୍ପନ୍ତେ ପୁଚ୍ଛିଲେ ସେ କ୍ଷଣି ।୪୭।
ଜନାର୍ଦ୍ଦନଙ୍କ ନଖ କୋଣେ । ଜାହ୍ନବୀ ଥାନ୍ତି ଅନୁକ୍ଷଣେ ।୪୮।
ଜମ୍ବୁ ଦ୍ୱୀପକୁ କେହ୍ନେ ଆସି । ଯାଦଃ ପତିରେ ଯାନ୍ତି ମିଶି ।୪୯।
ଜାଣିଥିଲେ ଏ କଥା ଯାକ । ଜଟିଳ କହ କରି ଠିକ ।୫୦।
ଜାଣିଣ ରାମଙ୍କର ମନ । ଜଳ୍ପିଲେ ଗାଧିଙ୍କ ନନ୍ଦନ ।୫୧।
ଯୁଗ ଆଦ୍ୟରେ ତୁମ୍ଭ କୂଳେ । ଜଣେ ସଗର ନାମେ ଥିଲେ ।୫୨।
ଯୁଗ୍ମ ତରଣି ସହସର । ଜନ୍ମିଲେ ତାଙ୍କର କୁମର ।୫୩।
ଜମାଇ ଧନେ ଦ୍ରବ୍ୟ ବୃନ୍ଦ । ଯାଗ ସେ କଲେ ଅଶ୍ୱମେଧ ।୫୪।
ଜମ୍ଭାରି ଚୋର ରୂପ ଧରି । ଯଜବ ବ୍ୟାଜେ ନେଲେ ହରି ।୫୫।
ଜଟିଳ କପିଳଙ୍କ ସ୍ଥଳେ । ଯମନେ ଘୋଡ଼ାକୁ ରଖିଲେ ।୫୬।
ଯାମିନୀ ହୋଇବାରୁ ଶେଷ । ଜ୍ୟାପତି ନ ଦେଖିଣ ଅଶ୍ୱ ।୫୭।
ଯେତେ ତାହାଙ୍କ ସୁତେ ଥିଲେ । ଜବେ ତାହାଙ୍କୁ ପଠାଇଲେ ।୫୮।
ଜଗତେ ଖୋଜି ଖୋଜି ତାଙ୍କେ । ଯାନ୍ତେ ମିଳିଲେ ଏକ ବେକେ ।୫୯।
ଯାନ୍ତେ ଦେଖିଲେ ବିଳ ତଳେ । ଜପରେ ଅଛନ୍ତି ଜଟିଳେ ।୬୦।
ଯାଗ ତୁରଙ୍ଗ ପୁଙ୍ଗ ତହିଁ । ଯନ୍ତ୍ରେ ଅଛଇ ବନ୍ଧା ହୋଇ ।୬୧।
ଜଟା ଉପାଡ଼ି କ୍ରୋଧେ ତାଙ୍କ । ଯାତନା ଦେଲେ ସେ ଅନେକ ।୬୨।
ଯତି ଗୃହିଁନ୍ତେ କୋପାନଳେ । ଜଳିଲେ ସଗରଙ୍କ ବାଳେ ।୬୩।
ଜାଣିଣ ନାରଦ ଗୋସାଇଁ । ଜଳ୍ପିଲେ ସଗରଙ୍କୁ ଯାଇଁ ।୬୪।

---

(୪୯) ଯାଦଃ ପତି—ସମୁଦ୍ର । (୫୫) ଯଜବ—ଯଜ୍ଞାଶ୍ୱ ।
(୫୬) ଯମନେ—ବାନ୍ଧି । (୫୯) ବେକେ—ବବରରେ ।

ଜନେଣ ହୋଇନ୍ତି ଦୁଃଖମତ । ଜଣେ ତା ଅଶ୍ୱବନ୍ତ ନାତ ।୬୫।
ଜନକ ମହାଶୋକ ଦେଖି । ଜନ୍ମି ଅନେକ କଲେ ସୁଖୀ ।୬୬।
ଯାଇ ଆଣିବ ମୁଁ ତୁରଗ । ଯାଗ ଆରମ୍ଭ କର ବେଗ ।୬୭।
ଜନକ ମୋହେ କହି ଏତେ । ଯାହାକୁ କଲେ ସେ ତ୍ୱରିତେ ।୬୮।
ଜଗତେ ବୁଲି ସେ ବଳରେ । ଯାଇ ପଶିଲେ ରଭସରେ ।୬୯।
ଜାତବେଦାରେ ସର୍ବ ତାତ । ଜଳନ୍ତି କଲେ ତା ଲୋକତ ।୭୦।
ଜଟୀଳଙ୍କର ପଦେ ନମି । ଜଣା କଲେ ହେ ମୁନି ସ୍ୱାମି ।୭୧।
ଜ୍ୱଳନେ ଯେଉଁମାନେ ନତ । ଜଳନ୍ତି କେହ୍ନେ ହେବେ ଶାନ୍ତ ।୭୨।
ଯତୀଶ କହିଲେ ଏ ବାଣୀ । ଯେବେ ଗଙ୍ଗାକୁ ପାର ଆଣି ।୭୩।
ଜୁଇରୁ ତେବେ ହେବେ ଶାନ୍ତ । ଜାଣ ହେ ବୀର ଅଶ୍ୱବନ୍ତ ।୭୪।
ଯଜ୍ଞ ଘୋଡ଼ାକୁ ଘେନି ସଙ୍ଗେ । ଯାଇ ସେ ହେଲେ ନିଜ ନଗ୍ରେ ।୭୫।
ଯାବନ୍ତ ପୀଡ଼ା ପିତାଙ୍କର । ଜଘନେ ଜଣାଇଲେ ଖର ।୭୬।
ଯଶୋଧନେଶ ତାହା ଶୁଣି । ଯୁକ୍ତି ନହେଲେ ଶୋକ ମଣି ।୭୭।
ଯାଗ କରଣ ସମାପକ । ଯାଇ ମିଳିଲେ ଅନ୍ତେ ନାକ ।୭୮।
ଯେ ଅଶ୍ୱବନ୍ତ ନରନାଥ । ଜନ୍ମିଲେ ତାଙ୍କ ଏକ ସୁତ ।୭୯।
ଜନକେ ହୋଇଣ ସେ ଇନ । ଜଗତ୍ତି କଲେ ସୁପାଳନ ।୮୦।
ଜଣେ ନନ୍ଦନ ତାଙ୍କ ସମେ । ଜନ୍ମିଲେ ଭଗୀରଥ ନାମେ ।୮୧।
ଜନକାନ୍ତେ ସେ ହୋଇ ରାଜା । ଯତ୍ନେ ପାଳନା କଲେ ପ୍ରଜା ।୮୨।
ଜୂଟ୍ଟେ ସେ ରାଜା ଏକ ଦିନେ । ଯୁକତ ହୋଇ ସୈନ୍ୟ ଜନେ ।୮୩।
ଜାଙ୍ଗଳେ ଭ୍ରମି ମୃଗୟାର୍ଥେ । ଜ୍ୟାଦେବକ ଦେଖି ଗୋଡ଼ାଅନ୍ତେ ।୮୪।
ଜଆଦ ପଳାଇ ଆକୁଳେ । ଯୋଗେ ପଶିଲା ସେହି ବନେ ।୮୫।
ଜ୍ୟାଭୃତ ତାର ପଛେ ଧାଇଁ । ଯାନ୍ତେ ପଶିଲେ ମଧ୍ୟ ତହିଁ ।୮୬।
ଜ୍ୱଳନେ ଦଗ୍ଧ ହୋଇଥିବା । ଜନଙ୍କୁ ଦେଖି ହେଲେ କାବା ।୮୭।
ଯୂତକେ ତହୁଁ ଆସି ମନ୍ତ୍ରୀ । ଜାଲଙ୍କୁ କହିଲେ ଏ ଉକ୍ତି ।୮୮।
ଯନ୍ତରେ ଆରୋହଣ ବାଜି । ଯିବାରୁ ମୃଗୟା ମୁଁ ଆଜି ।୮୯।
ଜାଙ୍ଗଳେ ଦେଖିଣ ବମ୍ବର । ଯାନ୍ତେ ମିଳିଲି ତା ମଧର ।୯୦।
ଯତନେ ଛନ୍ତି ତାଙ୍କ ପାଶେ । ଜ୍ୱଳନେ ଜଳନ୍ତି ମନୁଷ୍ୟେ ।୯୧।
ଜାଣିଥିଲେ ହେ ମନ୍ତ୍ରିବରେ । ଜଣାଅ ମୋର ସ୍ୱରତରେ ।୯୨।

---

(୭୮) ନାକ--ସ୍ୱର୍ଗ । (୮୬) ଜ୍ୟାଭୃତ--ରାଜା । (୮୪) ଜ୍ୟାଦେବ--ହରିଣଟିଏ ।

ଜନଇନଙ୍କ ବାଣୀ ଶୁଣି । ଜୂଟେଷ କହିଲେ ମନ୍ତ୍ରୀ ଶ୍ରେଣି ।୯୩।
ଜନ୍ମି ପୂର୍ବରେ ଭୂମଣ୍ଡ କୁଳେ । ଜଣେ ସଗର ନାମେ ଥିଲେ ।୯୪।
ଯୁଗ୍ମ ଷିରଣ ସହସର । ଜନ୍ମିଲେ ତାଙ୍କର କୁମର ।୯୫।
ଯାଗ କରନ୍ତେ ସେ ନରେଶ । ଜୂରିଣ ନେଲେ କେହି ଅଶ୍ୱ ।୯୬।
ଜାଣି ସେ ନର କୁଳପାଳ, । ଜବେ ପେଷିଲେ ସୁତବଳ ।୯୭।
ଯାନ୍ତେ ସେ ସଗରଙ୍କ ବାଳେ । ଯନ୍ତ କପିଳ ପାଶେ ହେଲେ ।୯୮।
ଯଜବ ଦେଖିଣ ସେ ସ୍ଥାନେ । ଯୋଗିଙ୍କି ଦଣ୍ଡିଲେ ବହନେ ।୯୯।
ଜାତୁକେ ଗୃହଁ ମୁନି ରାଏ । ଜଳିଲେ ଅନଳେ ସବ୍ୱଏ ।୧୦୦।
ଜ୍ୟାଧବ ବୋଇଲେ କେମନ୍ତ । ଜ୍ବଳନୁ ତାତେ ହେବେ ଶାନ୍ତ ।୧୦୧।
ଯୋଡ଼ି ମସ୍ତକେ ବେନି ପାଣି । ଜଣା କଲେ ସେ ମନ୍ତ୍ରୀ ଶ୍ରେଣି ।୧୦୨।
ଯେବେ ଆଣିବ ଗଙ୍ଗା ତେବେ । ଜନକେ ପାବନ୍ତୁ ତରିବେ ।୧୦୩।
ଯନ୍ତେ ତା ଶୁଣି ନରସାଇଁ । ଜନପଦକୁ ପାଟେ ଦେଇ ।୧୦୪।
ଯାଇ ଗୋକର୍ଣ୍ଣ ତୀର୍ଥେ ହୋଇ । ଜପିଲେ ବ୍ରହ୍ମାପଦ ଦୁଇ ।୧୦୫।
ଜଳଜାସନ ତା ମାନସେ । ଜାଣି ମିଳିଲେ ନୃପପାଶେ ।୧୦୬।
ଯାମିନୀ ଧବା ତାଙ୍କ ପଦ । ଜଳଜ ଧ୍ୟାନ କରି ହୃଦ ।୧୦୭।
ଜାଉ ଶ୍ରୀ ଭକ୍ତରାମ ଦାସ । ଜଳପେ ରାମାୟଣ ରସ ।୧୦୮।

ଇତିଶ୍ରୀ ଜାନକୀଶ ବିଳାସ ରାମାୟଣେ ଶିବଶିବା ସମ୍ବାଦେ ଆଦିକାଣ୍ଡେ ନାମ ଷଷ୍ଠ ଅଧ୍ୟାୟ ।

---

## ସପ୍ତମ ଅଧ୍ୟାୟ

ଜଟାଭୂଷଣ ଉବାଚ

ଜଟାଭୂଷଣ ଖଟା ତେଜ । ଜଳନ୍ତୁ ଶାନ୍ତ ଭବେ ମଜ୍ଜି ।୧।
ଯୋଗ ତେଜଣ ଭଗୀରଥ । ଜୁହାର କଲେ ଯୋଡ଼ି ହାତ ।୨।
ଜଣା କଲେ ହେ ପଦ୍ମବାଳ । ଜାଳିଲେ ମୋ ବଂଶ କପିଳ, ।୩।
ଜାହ୍ନବୀ ମତେ ଦିଅ ଝାଟ । ଯାଇ ତାରିବ ପିତୃପନ୍ତ ।୪।

---

(୯୫) ସହସର—ସହସ୍ର । (୧) ଖଟା—ବମନ । (୩) ପଦ୍ମବାଳ—ବ୍ରହ୍ମା ।
(୪) ଝାଟ—ଶୀଘ୍ର ।

ଜାତକ ବାକ୍ୟ ଶୁଣି ବେଧା । ଜଳ୍ପିଲେ ବହ୍ନାଣ ଶରଧା ।୫।
ଜନାର୍ଦ୍ଦନଙ୍କ ପାଦ ନଖେ । ଜାହ୍ନବୀ ରହିଛନ୍ତି (ଥାନ୍ତି) ସୁଖେ ।୬।
ଯାଅ ବିଷ୍ଣୁଙ୍କ ଠାବେ(କୁ) ଏବେ । ଜହ୍ନୁ ତନୟା ଦେବେ ଭବେ ।୭।
ଜଗତ ତାତ ଏତେ କହି । ଯାଇ ମିଳିଲେ ନିଜ ମହୀ ।୮।
ସେ ଭଗୀରଥ ନରବଣ । ଜନାର୍ଦ୍ଦନଙ୍କୁ କଲେ ଧ୍ୟାନ ।୯।
ଜାଣି ତା ଆସି ରମାପତି । ଜଳ୍ପିଲେ ଏ ରୂପେ ଭାରତୀ ।୧୦।
ଯେଉଁ ନିମିତ୍ତେ ଆସିଅଛ । ଜୃତରେ କହ ଦେବ ବତ୍ସ ।୧୧।
ଜଗଦୀଶ୍ୱରଙ୍କର ବାଣୀ । ଯତନେ ଶୁଣି ନରମଣି ।୧୨।
ଯୋଡ଼ି ମସ୍ତକେ ବେନିକର । ଜଣା କଲେ ହେ ଚକ୍ରଧର ।୧୩।
ଯେତେ ମୋହର ପିତୃକୁଳ । ଜାଳିଲେ କପିଳ ଜଟିଳ ।୧୪।
ଜାହ୍ନବୀ ତୁମ୍ଭ ପାଦେ ଛନ୍ତି । ଯେବେ ଦେବ ହେ ରମାପତି ।୧୫।
ଜନକମହେ ମୋର ତେବେ । ଜାତବେଦାରୁ ଶାନ୍ତ ହେବେ ।୧୬।
ଜନେଶ ଭାଷେ ଭବଗ୍ରାହୀ । ଜଳ୍ପିଲେ ଗଙ୍ଗା ଦେବି ମୁହିଁ ।୧୭।
ଜବବହ୍ନୀନ ନଦୀ ଭାରି । ଯାତନା ନ ସହିବେ ଧରା ।୧୮।
ଜଗତହନ୍ତା ତ୍ରିପୁରାରି । ଯେବେ ଧରିବେ ନିଜ ଶିର ।୧୯।
ଜହ୍ନୁ ତନୟା ଦେବି ମୁହିଁ । ଜାଣ ସନ୍ଦେହ ଏଥି ନାହିଁ ।୨୦।
ଜଳଜଲୋଚନ ଏମନ୍ତ । ଜଳପି ହେଲେ ଅନ୍ତର୍ହିତ ।୨୧।
ଜହରକଣ୍ଠଙ୍କର ପଦ । ଜପିଲେ ତହୁଁ ନୃପଚନ୍ଦ୍ର ।୨୨।
ଜାୟା ସହିତେ ଦିଗବାସ । ଜାଣି ତା ହେଲେ ପରବେଶ ।୨୩।
ଜଳ୍ପିଲେ ଆହେ ନରନାହା । ଯାହା ମାଗିବ ଦେବି ତାହା ।୨୪।
ସେ ଭଗୀରଥ ନରପତି । ଜଣାଇ ହୃଦୟରେ ପ୍ରୀତି ।୨୫।
ଯୋଡ଼ିଣ କର ଯୁଗ ଭଲେ । ଜୁହାର କରି ଜଣା କଲେ ।୨୬।
ଜଟା ଝିଙ୍କନ୍ତେ କପିଳଙ୍କ । ଜାଳିଲେ ମୋର ପିତୃଲୋକ ।୨୭।
ଯାତନା ସହିପାରି ଯେବେ । ଜାହ୍ନବୀ ଧରି ଦେବେ ତେବେ ।୨୮।
ଜୀମୂତବାସୀ ତାହା ଶୁଣି । ଜାତରେ କଥନ୍ତି ଏ ବାଣୀ ।୨୯।
ଜାହ୍ନବୀ ଛାଡ଼ନ୍ତୁ ଶ୍ରୀଧର । ଜଟାରେ ଧରିବି ମୁଁ ଖର ।୩୦।
ଜଗପାଳ ତହୁଁ ବିଷ୍ଣୁ ପଦ । ଜପ କରନ୍ତେ ନିଜ ହୃଦ ।୩୧।

---

(୧୬) ଜନକମହେ—ପିତାମହେ । (୧୯) ଶିର—ମସ୍ତକରେ ।
(୨୨) ଜହରକଣ୍ଠ—ଶିବ । (୨୯) ଜୀମୂତବାସୀ—ଶିବ ।
(୩୦) ଛାଡ଼ନ୍ତୁ—ଢାଳନ୍ତୁ ।

ଜ୍ୟେଷ୍ଠ ଉଡ଼ିଲେ ଗଙ୍ଗା ହରି । ଜ୍ୟେଷ୍ଠ ତା ଧରିଲେ (ସୁ)ପୁରାରି ।୩୨।
ଜଟ୍ ବାହାର ଗଙ୍ଗା ବେଗେ । ଜବେ ପଡ଼ିଲେ ମେରୁ ନଗେ ।୩୩।
ଜାଣି ନପାରି ତହୁଁ ପଥ । ଜୀମୂତେ ରହିଲେ ସେ ପାଥ ।୩୪।
ଜାତକ ସୁମେରୁଙ୍କୁ ଭଲେ । ଜଣା କରନ୍ତେ ସେ କହିଲେ ।୩୫।
ଯେଣୁ ମୋ ଅଙ୍ଗେ ପଥ ନାହିଁ । ଜାହ୍ନବୀ ତେଣୁ ଛନ୍ନ ରହି ।୩୬।
ଜଣାଣେ ତାଙ୍କୁ ତୋଷ କରି । ଜନେଶ ଶୁଣି ସେ ଉତ୍ତର ।୩୭।
ଯୂକତ ବନପୂରେ ହୋଇ । ଜଳ୍ପିଲେ ଆଗୋ ମହାମାଈ ।୩୮।
ଯହିଁ ତହିଁରେ ତୁମ୍ଭେ ରହ । ଜମ୍ବୁକୁ ଏବେ ବହି ବହ ।୩୯।
ଜାହ୍ନବୀ ବୋଇଲେ ହେ ରାଜ । ଜମ୍ଭଭେଦଙ୍କ ଆଣ ଗଜ ।୪୦।
ଯେବେ ହାଣିବ ଦନ୍ତେ ଗିରି । ଯିବଇ ତେବେ ମୁଁ ବାହାରି ।୪୧।
ଯାଇ ସ୍ୱର୍ଗକୁ ନରମଣି । ଜିଷ୍ଣୁଙ୍କୁ କହିଲେ ଏ ବାଣୀ ।୪୨।
ଜହ୍ନୁଚ୍ଛନ୍ନ ମୋ ପିତାମହେ । ଜାହ୍ନବୀ ହରି ଦେଲେ ସ୍ନେହେ ।୪୩।
ଜଟାରେ ପଡ଼ି ଶିବଙ୍କର । ଯାଇ ପଡ଼ିଲେ ମେରୁଧର ।୪୪।
ଯୋ ଐରାବତ ଗଜବର । ଜବନେ ଦିଅ ସୁନାଶିର ।୪୫।
ଜମ୍ଭାରି ବୋଇଲେ ଗଜକୁ । ଜଳ୍ପନେ କର ସନ୍ତୋଷକୁ ।୪୬।
ଜାତକ ଗଜ ଆଗେ ହୋଇ । ଜଣାନ୍ତ ହୋଇଣ ବଟନାଇ ।୪୭।
ଜମ୍ଭୁ ପର୍ବତ ଫୋଡ଼ନରେ । ଯିବା ଆସ ମୋ ସଙ୍ଗତରେ ।୪୮।
ଜିଷ୍ଣୁ ବାହନ ତାହା ଶୁଣି । ଜଳ୍ପିଲେ ଆହେ ନୃପମଣି ।୪୯।
ପାଇଣ ଗଙ୍ଗାକୁ ଚତୁର । ଜାୟା ହେବେ କ ସେ ମୋହର ।୫୦।
ଯିବ ମୁଁ ତେବେ ଏହଠାରୁ । ଯାଅ ଅଯୋଧ୍ୟା ଜନଗୁରୁ ।୫୧।
ଜଗଜ୍ଞାପତି ତହୁଁ ଗମି । ଜହ୍ନୁସୁତାଙ୍କୁ କହେ ନମି ।୫୨।
ଯୂନକ ବୋଇଲେ ଗଜରାଜା । ଯେବେ ମୋ ଗଙ୍ଗା ହେବ ଭାର୍ଯ୍ୟା ।୫୩।
ଜଡ଼ତରେ ସେହଠାକୁ ମୁହିଁ । ଯିବ ନୋହିଲେ ନ ଯିବଇଁ ।୫୪।
ଜାହ୍ନବୀ ବୋଇଲେ ତା ଶୁଣି । ଜାଅ ହେ ନୃପ ଚୂଡ଼ାମଣି ।୫୫।
ଯାତନା ସହିଲେ ସେ ମୋର । ଜାୟା ମୁଁ ହେବ ଗଜଙ୍କର ।୫୬।
ଯଶୋଧନ ତା ଶୁଣି ବେଗେ । ଯାଇ କହିଲେ ଗଜ ଆଗେ ।୫୭।
ଯେବେ ସହିବ ଗଙ୍ଗା ଭାର । ଜବେ ହେବେ ସେ ତୁମ୍ଭ ଦାରା ।୫୮।
ଜିଷ୍ଣୁ ବାହନ ତହୁଁ ତୋଷେ । ଯାନ୍ତେ ମିଳିଲେ ମେରୁ ପାଶେ ।୫୯।

(୩୩) ନଗ—ପର୍ବତ । (୩୪) ଜୀମୂତ—ପର୍ବତରେ । (୩୪) ପାଥ—ଜଳ ।

ଜୀମୂତ ପ୍ରାଏ ଗର୍ଜ୍ଜି କର । ଜୀମୂତେ ଚୌଦନ୍ତ ପ୍ରହାର ।୬୦।
ଯନ୍ତୁଁ ଝିଙ୍କିଲେ ଦନ୍ତରାଜ । ଜବେ ଦନ୍ତେକ ଗଲେ ଭାଜ ।୬୧।
ଜମ୍ବୁରୁ ଅମ୍ବୁ ତନ ଧାର । ଜନ୍ମିଲେ ତନ୍ବୀ ହୋଇ ଘୋର ।୬୨।
ଜହ୍ନୁ ତନୟା ସରସ୍ୱତୀ । ଯମୁନା ନାମେ ତିନ ମୂର୍ତ୍ତି ।୬୩।
ଜମ୍ଭାରି ବାହନ ଉପରେ । ଜାହ୍ନବୀ ପଡ଼ିଲେ ମଝିରେ ।୬୪।
ଜାଣି ନପାରି କୁଳପଥ । ଜଳେ ଭ୍ରମିଲେ ଐରାବତ ।୬୫।
ଯୋଜନ ପଞ୍ଚାଶ ଅନ୍ତରେ । ଯାଇ ଲଗିଲେ ପ୍ରସ୍ତ(ତ)ରରେ ।୬୬।
ଯୁକ୍ତ କ୍ରୀଡ଼ାରେ ହୋଇ ଭଲେ । ଜରାସ୍ୱାନଙ୍କ ପୁରେ ହେଲେ ।୬୭।
ଜନେଶ ଆଗେ ଯାଉଥିଲେ । ଯାନ୍ତି ନିଶ୍ରୋତା ପଛେ ଭଲେ ।୬୮।
ଜଣେ ସେ କାଳେ ଶୁଣ୍ଡି ଆଣୀ । ଯାଉଥିଲେ ସେ ଜଳ ଆଣି ।୬୯।
ଜଳ ଆସିବା ଦେଖି ସେହି । ଜବେ ପାତିଲେ ଭାଣ୍ଡ ନେଇ ।୭୦।
ଜାହ୍ନବୀ ଭାଣ୍ଡେ ପଶୁ ଦେଖି । ଜନେଶ ବୋଇଲେ ହେ ସଖି ।୭୧।
ଯୋ ଅମ୍ବ(ମ୍ବୁ)ସ୍ଥିତ ତୁମ୍ବ କୁମ୍ବ । ଜଜମ୍ବ ପଡରମ୍ବ ଦମ୍ବ (?) ।୭୨।
ଜ୍ୟାପତି ଭରତ ଏରୂପେ । ଜଲ୍ପ(ଳ୍ପ)ନ୍ତେ ଆରତେ ସମୀପେ ।୭୩।
ଯନ୍ତ୍ର ଶୁଣି ସେ ଶୁଣ୍ଡି ଆଣୀ । ଜଆରେ ଢାଳି ଦେଲେ ପାଣି ।୭୪।
ତହୁଁ ସେ ଶୁଣ୍ଡି ଆଣୀ କୁମ୍ଭ । ଜାତ ହୋଇଲେ ଗଙ୍ଗା ଅମ୍ବୁ ।୭୫।
ଜଗତେ ସୁରା ସୁଷା ନାମ । ଜ୍ୱଳତ ହେଲେ ତହୁଁ ଭ୍ରମ ।୭୬।
ଜନେଶ ଗଙ୍ଗା ହେନ ସାଥ । ଯାଅନ୍ତେ କତ୍ତୁ ଦୂର ପଥ ।୭୭।
ଯତଏ ଜହ୍ନୁ ନାମେ ବସି । ଜ୍ୟାମାରେ ସ୍ନାନକର୍ମ ଶେଷି ।୭୮।
ଯୁକତେ ସନ୍ଧ୍ୟା କରୁଥିଲେ । ଜଳ ଦେଖନ୍ତେ ଧରି ଭଲେ ।୭୯।
ଜମନ କଲେ ଚକ୍ରକର । ଜାଣି ତା ତତ୍ତ୍ୱେ ଦଣ୍ଡଧାରୀ ।୮୦।
ଜଣା କରନ୍ତେ ସୁତ୍ତି ଗିର । ଜୁଷ୍ଟ ହୋଇ ସେ ଯଷ୍ଟାବର ।୮୧।
ଜାନୁ ଚିରି କଲେ ଜନ୍ମ । ଜାହ୍ନବୀ ବୋଲି ତେଣୁ ନାମ ।୮୨।
ଯୋଜନ ପନ୍ଦର ସରଣୀ । ଯାନ୍ତେ ସେ ଅନ୍ତେ ଗଙ୍ଗାରାଣୀ ।୮୩।
ଜାଙ୍ଗେଲ ଗାଈଙ୍କି ଚରାଇ । ଜଣେ ଗୋପାଳ ଥିଲେ ରହି ।୮୪।
ଜାହ୍ନବୀ ବୋଲି ଗାଈ ନାମ । ଯାଉ ସେ ଦୂର ଦେଖି ତୃଣ ।୮୫।
ଯତନେ ବଜାଇ ମୁରଲୀ । ଜବନେ ଡାକୁ ନାମ ବୋଲି ।୮୬।

---

(୭୬) ସୁରା—ମଦ୍ୟ, ସୁଷା—ଦେବୀ । (୮୦) ଜମନ—ଭକ୍ଷଣ ।
(୮୧) ଜୁଷ୍ଟ—ଆନନ୍ଦ ।

ଜହ୍ନୁ ତନୟା ସେହି ସ୍ଥନେ । ଯାଇ ମେଳିଲେ ଘୋରବନେ ।୮୭।
ଜନେନ୍ଦ୍ର ବୋଇଲେ ବିନୟେ । ଯାଉଛ କେଉଁଠାକୁ ମାଏ ।୮୮।
ଜଲ୍ପିଲେ ଗଙ୍ଗା ଆହେ ବୀର । ସ୍ତୁତରେ ପବକାଳ କର ।୮୯।
ଯାତରା କରୁଥିଲେ ବାହି । ଯିବ ତା ଶୁଣି ପଛେ ମୁହିଁ ।୯୦।
ଜୁହୁଳ କରି ନରପତି । ଜଘନେ ବାହି କଲେ ଗତି ।୯୧।
ଯେଣୁ ସେ କାଳ ବଜାଇଲେ । ଜାହ୍ନବୀ କାଲନାମ ହେଲେ ।୯୨।
ଜନପାଳକ ପଛେ ତହୁଁ । ଜଗଦୀଶ୍ୱରପଦା ଯାଉଁ ।୯୩।
ଯହିଁରେ ସଗରଙ୍କ ବାଳେ । ଜାତବେଦାରେ ସଦା ଥିଲେ ।୯୪।
ଯୋଗେ ପ୍ରବେଶ ତହିଁ ବେଗେ । ସେ ଭଗୀରଥ ତାଙ୍କ ସଙ୍ଗେ ।୯୫।
ଜ୍ୱଳନେ ପଶିଣ ସେ ଜଳ । ଯାଦଃପତିରେ ହେଲେ ମେଳ ।୯୬।
ଜଗତେ ସେ ହନୁ ସଗର- । ଜନେଶ ଖୀରନ୍ତି ସାଗର ।୯୭।
ଯେତେ ସେ ସଗରଙ୍କ ପୋତୟେ । ଯାଇ ବସିଲେ ଦେବାଳୟେ ।୯୮।
ଜାହ୍ନବୀ ବୋଲି ଏହା ନାମ । ଜାଣ ହେ ରାମ ରଘୁତ୍ତମ ।୯୯।
ଜଟିଲ କହି ଏ ରୂପରେ । ଯାଇ ବସିଲେ ତରଣୀରେ ।୧୦୦।
ଜଗତତ୍ତ୍ୱର ରଘୁ ସୁତ । ଜଘନ୍ୟଜଳେ ହୋଇ ଯୁତ ।୧୦୧।
ଯିବାର କାଳେ ନାବଠାକୁ । ଜାଳିକ କହିଲେ ରାମଙ୍କୁ ।୧୦୨।
ଜାଣିଛୁ ମୁହିଁ ଭଲେ ହୃଦ । ଯିବାରୁ ବାଜ ଭୁମ୍ଭ ପଦ ।୧୦୩।
ଜାଙ୍ଗଳେ ପଡ଼ିଥିବା ଶିଳା । ଯୋଷା ତକ୍ଷଣେ ହୋଇଗଲା ।୧୦୪।
ଜଳେ ନଧୋଇ ପଦବେନି । ଯେବେ ବସିବ ମୋ ତରଣୀ ।୧୦୫।
ଯୁବତୀ ହୋଇବ ଅବଶ୍ୟ । ଜୀବିକା ମୋର ହେବ ନାଶ ।୧୦୬।
ଯୋ ରାମ ନାବିକ ତାହାଙ୍କ । ଯୁଗଳ ପଦ ପୁଣ୍ଡରୀକ ।୧୦୭।
ଜପି ଭକତ ରାମ ଦାସ । ଜଳପେ ରାମାୟଣ ରସ ।୧୦୮।

ଇତିଶ୍ରୀ ଜାନକୀଶ ବିଳାସ ରାମାୟଣେ ଶିବଶିବା ସମ୍ବାଦେ ଆଦିକାଣ୍ଡେ
ନାମ ସପ୍ତମ ଅଧ୍ୟାୟଃ ।

---

(୯୦) ବାହି—ବାଇ, ବଜାଇ । (୯୬) ଯାଦଃପତି—ସମୁଦ୍ର ।

# ଅଷ୍ଟମ ଅଧ୍ୟାୟ

## ଈଶାନ ଉବାଚ

ଜୀମୂତ ସୁତାଙ୍କୁ ଈଶାନ । ଜାନୁ ଉପରେ ବସାଇଣ ।୧।
ଜ ବର୍ଣ୍ଣ ରଖି ପଦ ଆଦ୍ୟେ । ଜଳ୍ପନ୍ତୁ ରାମ କଥା ମୋଦେ ।୨।
ଜଳପି ଏତେ ସେ ଧୀବର । ଜହ୍ନୁ ସୁତାଙ୍କ ଅଣି ତୀର ।୩।
ଯତ୍ନେ ରାମଙ୍କ ପଦ ଧୋଇ । ଜଳ ସିଞ୍ଚିଲେ ଶିରେ ନେଇ ।୪।
ଜେମନ କରି କନ୍ଦ ଭାବେ । ଜୁଷକୁ କରାଇଲେ ସ୍ତବେ ।୫।
ଯଶାସ୍ୱ ସହିତେ ରାଘବ । ଯାଇଣ ଆରୋହନ୍ତେ ନାବ ।୬।
ଯୁକ୍ତ ମନେ ସେ କୈବରତ । ଯତନେ ଧରି କରେ କାତ ।୭।
ଜାୟା ସହିତେ ବାହି ତରି । ଜମ୍ବାଳୀନଙ୍କି କଲେ ପାରି ।୮।
ଜଳଦ ଶ୍ୟାମଳ ସେ କାଳେ । ଜାଲଧାରିଙ୍କି ଗୃହେଁ ଭଲେ ।୯।
ଜଳ୍ପିଲେ ଜାୟା ବନ୍ଧୁ ଭୁଲେ । ଯାଇଣ ବସ ସ୍ୱର୍ଗ ଆଳେ ।୧୦।
ଜମ୍ପାରି ବଚନେ ସେ କାଳ । ଯାନେକ ମିଳିଲା ସେ ସ୍ଥଳ ।୧୧।
ଜାତେ ସେ ଧୀବର ନାୟକ । ଯେତେକ ବନ୍ଧୁ ବର୍ଗ ତାଙ୍କ ।୧୨।
ଯୁତ ହୋଇଣ ତାହାଙ୍କରେ । ଯାଇ ବସନ୍ତି ସେ ଯାନରେ ।୧୩।
ଜୁପଥରେ ସେ ରଥ ଚଳି । ଜମ୍ବୁ ଭୁବନେ ଗଲା ମିଳି ।୧୪।
ଯାନୁ ଓହ୍ଲାଇ କୈବରତ । ଜପିଲେ ବସି ରଘୁସୁତ ।୧୫।
ଯନ୍ତ କୌଶିକ ଏଥୁ ଅନ୍ତେ । ଯେ ରାମ ଲକ୍ଷ୍ମଣ ସହିତେ ।୧୬।
ଯାତ୍ରା କରିଣ ଉତ୍ଫୁଲେ । ଜନକ ନଗରେ ମିଳିଲେ ।୧୭।
ଜୀମୂତ ଶ୍ୟାମ ଆସିବାର । ଜାଣି ଧାଇଁଲେ ପୁର ନର ।୧୮।
ଯୁବା ବୟସୀ ନାରୀମାନେ । ଯୁକତ ହୋଇଣ ମଦନେ ।୧୯।
ଜ୍ୟୋତରେ ଦେଖିବା ବୋଲିଣ । ଜୁଟରେ କଲେ ପରିପୂର୍ଣ ।୨୦।
ଜଗତୀ ଉପରେ କେଉଁଠି । ଯୋଗୀ ପଣରେ ଦେଲେ ଦୃଷ୍ଟି ।୨୧।
ଜ୍ୟାରୂଢ ଚଢ଼ି କେଉଁ ନାରୀ । ଜାଣିଲେ ଦେଖୁ ସେ ହରି ।୨୨।

---

(୧) ଜୀମୂତ ସୁତା—ପାର୍ବତୀ । (୫) ଜେମନା—ଭକ୍ଷଣ ।
(୧୪) ଜୁ—ଦ୍ୟୁ ବା ସ୍ୱର୍ଗ ।

ଜଂଘ୍ କେ ପୁଷ୍ପ ଦେଇ ଛେଚ । ଯୁବତୀ ସଙ୍ଗେ ଗଲେ ନାଚ ।୨୩।
ଯେ ଶୋଇଥିଲେ ଚେତା ପାଇ । ଜମ୍ଭା ମାରଣ ଗଲେ ଧାଇଁ ।୨୪।
ଯୁଗ ସ୍ତନୁ କେ ବାସ କାଢ଼ି । ଜହର କଣ୍ଠେ ଗଲେ ଜଡ଼ି ।୨୫।
ଜନସ୍ଥ ଲୁପୁଥିଲେ କଏ । ଜାଣିଣ ଧାଇଁଲେ ନର୍ତ୍ତ୍ୟେ ।୨୬।
ଜଳାପୁଞ୍ଜରେ କେହୁ ଗୃହ୍ନିଁ । ଜଳଜ ସୁତଙ୍କୁ ନନ୍ଦଇ ।୨୭।
ଜନକ ନଗ୍ର ନିବାସିନୀ । ଯେ ଥିଲେ ଯୁବା ସୀମନ୍ତିନୀ ।୨୮।
ଯେ ଯାହା ରୂପ ଛକ ଆସି । ଜମି ଗୃହ୍ନିଁଲେ କାମେ ରସି ।୨୯।
ଜନକ ନୃପ ଶିରୋମଣି । ଯତିଙ୍କ ଆଗମନ ଶୁଣି ।୩୦।
ଯାବନ୍ତ ପୂଜା ସାମଗିର । ଜମାଇ ସ୍ୱର୍ଣ୍ଣପାତ୍ରେ ଧରି ।୩୧।
ଯୁତ ହୋଇଣ ଶତାନନ୍ଦେ । ଜନସ୍ଥୁ ବାହାରି ଆନନ୍ଦେ ।୩୨।
ଜବନେ ମିଳି ମୁନି ପାଶେ । ଜୁହାରି କଲେ ପଦ ଦେଶେ ।୩୩।
ଯଥୋକ୍ତ ବାକ୍ୟେ ପୂଜା କରି । ଜଳ୍ପିଲେ ଏ ବଚନୋଚ୍ଚାରି ।୩୪।
ଯୋ ଦୁହେଁ ଭୁମ୍ବ ସଙ୍ଗେ ଛନ୍ତି । ଜନକ ଆ(ଯୁ।)ଙ୍କ କେ ଅଟନ୍ତି ।୩୫।
ଜ୍ୟୋତିରେ ଦେଖିଲି ମାନବକେ । ଜନ୍ମିଲା ମୋଦ ହୃଦଓକେ ।୩୬।
ଜାତକ ବାକରେ କୌଶିକ । ଜଳ୍ପିଲେ ଶୁଣ ହେ ଜନକ ।୩୭।
ଜନମୀ ଯୁଆଙ୍କ କଉଶଲ୍ୟା । ଜନକ ଅଜଙ୍କର ବଳା ।୩୮।
ଯଜ୍ଞ ମୋ ରଖିବାର ପାଇଁ । ଯାଇ ଆଣିଲି ମାଗି ମୁହିଁ ।୩୯।
ଜୀମୂତ ପଟରେ ବରନ । ଯାହାଙ୍କ ହସେ ଅପଘନ ।୪୦।
ଜନାର୍ଦ୍ଦନଟି ସେ ସାକ୍ଷାତେ । ଜନ୍ମିଲେ ରାମ ନାମେ ମର୍ତ୍ତ୍ୟେ ।୪୧।
ଯେ ବନ୍ଧୁଛନ୍ତି ଗୌରବର୍ଣ୍ଣ । ଜାଣ ସେ କନିଷ୍ଠ ନାରାୟଣ ।୪୨।
ଜନପଦେ ଏ ଗୃପଧର । ଜୀବ ହରିଲେ ତାଡ଼କାର ।୪୩।
ଯୁଦ୍ଧ କରନ୍ତେ ଦୈତ୍ୟେ ଆସି । ଜବଗେ ତାହାଙ୍କୁ ବିନାଶି ।୪୪।
ଯମ ସଦନେ ବସାଇଲେ । ଯଜ୍ଞ ମୋହର ରକ୍ଷା କଲେ ।୪୫।
ଜବେଶ ଶାପ ଶତାନନ୍ଦ । ଜନମା ଥିଲେ ହୋଇ ମନ୍ଦ ।୪୬।
ଜଳଜ ପଦ ଦେଇ ତହିଁ । ଯୁବତୀ କରିଦେଲେ ଏହି ।୪୭।
ଜନସ୍ଥିତୀଙ୍କ ଶୁଭ ବାଣୀ । ଜାଣନ୍ତେ ଶତାନନ୍ଦ ମୁନି ।୪୮।

---

(୨୬) ଜନସ୍ଥ—ଘର । (୨୯) ଛକ—ଲୁଚିକରି । (୩୬) ଓକେ—ଗୃହରେ ।
(୩୭) ବାକରେ = ବାକ୍ୟରେ, କଥାରେ । (୪୪) ଜବଗ – ଶର ।

ଜମ୍ବାଳଜାକ୍ଷଙ୍କୁ ପ୍ରଶଂସି । ଜୟ କଲ୍ୟାଣ କଲେ ଋଷି ।୪୯।
ଯନ୍ତ୍ରଙ୍କ ସଙ୍ଗ ଛନ୍ଦୁଁ ରାମ । ଯାନ୍ତେ ଦେଖିଲେ ନୃପ ଗ୍ରାମ ।୫୦।
ଜନେଶ ଚନ୍ଦ୍ର ଦଶେ ରାଘବ । ଜନ୍ମାର ଫଳ ହେଲେ ଲଭ ।୫୧।
ଜନକ ନୃପଦାର ଶ୍ରେଣୀ । ଜଳଜାକ୍ଷଙ୍କାଗତ ପୁଣି ।୫୨।
ଜଗଣ୍ଡି ପରେ ଝଟି ବେଗ । ଜାଣିଲେ ଦେଖି ଏ ଅନଙ୍ଗ ।୫୩।
ଜୁଆଁଇ ଆମ୍ଭ ଏ ହୋଇବେ । ଯୁବକ ନାହିଁ ଏଥି ଲବେ ।୫୪।
ଜାନକୀ କମଳ ନୟନୀ । ଜବା ଅଧରୀ ଚନ୍ଦ୍ରାନନୀ ।୫୫।
ଯାହାଙ୍କ ମନମାୟା ନାମ । ଜଳଜକର ତା ଧରଣ ।୫୬।
ଯାଇ ଅଟ୍ଟାଳି ଉପରକୁ । ଯତ୍ନେ ଦେଖନ୍ତି ଶ୍ରୀ ରାମଙ୍କୁ ।୫୭।
ଜାହ୍ନବୀଧର ପରେ ମନ୍ତ୍ରି । ଜପିଲେ ବେନି ଆଖି ବୁଜି ।୫୮।
ଯେସନ୍ତେ ଚକୋର ଚନ୍ଦ୍ର ରୁହିଁ । ଜାନକୀ ତେସନ୍ତେ ମୋଦ ବହି ।୫୯।
ଜଳ୍ପିଲେ ରୁହିଁ ସଖୀମୁଖ । ନଳଦ ବରନଙ୍କୁ ଦେଖ ।୬୦।
ଜୟୀ ନଭେ ନୃପରୁକ୍ଷ ବ୍ରାତେ । ଜଳଜ ଉଦୟ କ ସ(କ୍ଷା)ନ୍ତେ ।୬୧।
ଜୁଟିଲେ ମନ ଏ ମୋହର । ଯେବେ ମୋ ହେବେ ଗୋ ଏ ବର ।୬୨।
ଜୁହୁ ଧାରୀଙ୍କି ମୁଁ ସୁରଭି । ଜାମ୍ବୁନଦାଦ ରତ୍ନ ଦେବି ।୬୩।
ଯେବେ ନୋହିବେ ଏ ମୋ ପତି । ଜୀବନ ହାରିବି ଝଟତି ।୬୪।
ଜୀବକୀ ନାରୀ ତାହା ଶୁଣି । ଜାନକୀ ଆଗେ ଏତେ ଭଣି ।୬୫।
ଯାହା କହିଲ ନାରୀବର । ଯଥାର୍ଥେ ହେବେ ଏ ତୋ ବର ।୬୬।
ଜୟାଧବ କର ଭଗନକୁ । ଜାୟା ଗୋ କରିବେ ତୁମ୍ଭଙ୍କୁ ।୬୭।
ଜନ୍ମ ଜନ୍ମ ଏ ତୁମ୍ଭ ପାଇଁ । ଜାଣଇଁ ଏହି କଥା ମୁହିଁ ।୬୮।
ଜଳଜାଳୟା ଭଗବାନ । ଜାତ ହୋଇଛ ବେନି ଜନ ।୬୯।
ଜାନକୀ ବୋଲେ ଶୁଣି ତାହା । ଜାଣ ଗୋ ସଖି ମନମାୟା ।୭୦।
ଜଳଜ ବୃନ୍ଦ ସ୍ବାଙ୍କ କର । ଜୟାଧର ବଢ଼ାଇ ନିଷ୍ଠୁର ।୭୧।
ଯେସନ କମଠର ପୃଷ୍ଠ । ଜମ୍ଭୁ ନୋହିବେ ଘାରେ ଜୋଟ ।୭୨।
କିଆରୁ ତୋଳିବେ କେସନେ । ଜାତ ସଂଶୟ ଏଣୁ ମନେ ।୭୩।

---

(୬୧) ପୃଥିବୀ ରୂପକ ଆକାଶରେ ରାଜା ରୂପକ ତାରକାସମୂହ ମଧ୍ୟରେ ଚନ୍ଦ୍ର ଉଦୟ ହେଲେ କି । (୬୩) ଜୁହୁ ଧାରୀ—ଶିବ ।
(୬୫) ଜୀବକୀ—ସେବକୀ ।

ଜାନୁରେ ଗିରି କେ ତୋଳିବ । ଯାଦଃପତିଙ୍କି କେ ପିଇବ ।୭୪।
ଜଣାନ୍ତି ମନମାୟା ଜବ । ଜଳ କୋମଳ କାଟେ ଗ୍ରାବ ।୭୫।
ଜୀମୂତ ସମ ତୂଳା ଥିଲେ । ଜ୍ୱଳନ ଜାଳି ଦ୍ୟନ୍ତି ଭଲେ ।୭୬।
ଜଳନିଧିଙ୍କ ଜଳରାଶି । ଯତି ଅଗସ୍ତି ଦେଲେ ଗ୍ରାସି ।୭୭।
ଜହ୍ନୁ ତନୟାଧର ପୁଣ । ଜଠର କରିଦେଲେ ପାନ ।୭୮।
ଜୟନ୍ତ ନୃପ ହେଲା ଭାବେ । ଜୀମୂତ ଶ୍ୟାମଳ ତୋଳିବେ ।୭୯।
ଜାନକୀ ନକର ଶଂସୟ । ଯୁକେ ହେବେ ସ୍ୱେ ଭୁମ୍ଭ ପ୍ରିୟ ।୮୦।
ଜନକ ଏ ଅନ୍ତେ ସରାଗେ । ଜଣାନ୍ତି ବିଶ୍ୱାମିତ୍ର ଆଗେ ।୮୧।
ଯେଉଁ ନିମିତ୍ତେ ଆସିଅଛ । ଯାବନ୍ତ କହି ଗାଧି ବତ୍ସ ।୮୨।
ଯତିଭୂପତି ତାହା ଶୁଣି । ଜୂତରେ କହିଲେ ଏ ବାଣୀ ।୮୩।
ଯେବଣ ନୃପ ଲକ୍ଷ୍ମୀକାନ୍ତ । ଜାଜ୍ୱଲ୍ୟେ ହୋଇଅଛି ଜାତ ।୮୪।
ଜିତ ଜୀମୂତ ଶ୍ୟାମ ରାମ । ଜ୍ୟା ଚଢ଼ାଇବେ ତହିଂ ଜାଣ ।୮୫।
ଜନକ ତାହା ଶୁଣି ହସି । ଜଳ୍ପିଲେ ଶୁଣ ଯତି ଶଶି ।୮୬।
ଯୌବନ ନୁହଁନ୍ତି ତ ଏହି । ଜ୍ୟାଧର ଧରିବେ ଏ କେହି(କାହିଁ)।୮୭।
ଜଗତ ତାତ ବେନି ପୁଣି । ଜୁଷ୍ଟରେ କହିଲେ ତା ଶୁଣି ।୮୮।
ଜଳଜଦୃଶ ରଘୁ ସୁତ । ଜଘନ୍ୟଜରେ ହୋଇ ଯୁତ ।୮୯।
ଜରାସନକୁ ଦେଖି ନେତ୍ର । ଯୁଗଳ କରିବେ ପବିତ୍ର ।୯୦।
ଯା ଭାର ନ ସହିଲେ ଶୂଳୀ । ଜନ କି ଧରିବେ ତା ତୋଳି ।୯୧।
ଜବେ ଦେଖାଅ ନୃପୋତ୍ତମ । ଯିବେ ଗ୍ରାମକୁ ଦେଖି ରାମ ।୯୨।
ଜନମି ତାତ ଏହାଙ୍କର । ଜତ୍ର ଦୁଃଖରେ ଥିବେ ଘୋର ।୯୩।
ଜନକ ତା ଶୁଣି ପଞ୍ଚସି । ଯୁଗ୍ମ ସହସ୍ର ମଲ୍ଲ ପେଶି ।୯୪।
ଜ୍ୟାଧର ମଞ୍ଜୁଷର ଭୂଟଲେ । ଜ୍ୟାଟରେ ଘୋଷାରି ଅଣାଇଲେ ।୯୫।
ଜନକ କୌଶିକଙ୍କୁ କହେ । ଜାହ୍ନବୀଧର ନୃପଇସ୍ୱେ ।୯୬।
ଯେ ଏହି ଧନୁ ପାଟରେ ବହ୍ନି । ଜେମା ତାହାଙ୍କୁ ଦେବି ମୁହିଁ ।୯୭।
ଯମାପମକୁ ଏ ରୂପରେ । ଜାଣ କରିଛି ମୁଁ ପୂର୍ବରେ ।୯୮।
ଜନେଷ ଆସ୍ୟ ଏହା ଶୁଣି । ଜାତେ ଉଠିଲେ ନୃପପାଣି ।୯୯।
ଯାଇଣ ଲକ୍ଷ୍ମଣଙ୍କ ଭୁଟଲେ । ଜଯନେ ଧନୁଙ୍କୁ ମିଳିଲେ ।୧୦୦।
ଯେସନ ମତ୍ତଗଜ ପାଶେ । ଜାଙ୍ଗଳେଶ୍ୱର ମିଳେ ରୋଷେ ।୧୦୧।
ଜୟନ୍ତ ନୃପ ପାଶେ ତତହିଁ । ଜମ୍ବାଳଜାକ୍ଷ ହେଲେ ତୂର୍ଣ୍ଣି ।୧୦୨।

ଜବଗାସନ ଦେଖି ଶ୍ରୀଲେ । ଯିବ ମୁଁ ଆଜ ଭଜି ହେଲେ ।୧୦୩।
ଯୁଗ ଅନ୍ଦର ପଡ଼ିଥିଲି । ଜନାର୍ଦ୍ଦନଙ୍କୁ ଯା ଦେଖିଲି ।୧୦୪।
ଜୀବନ ଧନ୍ୟ ହେଲା ମୋର । ଜପି ଏତେ ସେ ରଘୁବର ।୧୦୫।
ଜର୍ଜ୍ଜରେ କାର୍ମୁକ ବଷାଦେ । ଜୁହାର କଲେ ରାମ ପାଦେ ।୧୦୬।
ଜଳନ୍ତର ଭୂପତି ଗୁରୁ । ଯିବାକୁ ଫେରି ସଂସାରରୁ ।୧୦୭।
ଯୋ ରାମ ସଉମିତ୍ରି ବେନି । ଜପେ ତାହାଙ୍କୁ ମୋଦ ଘେନି ।୧୦୮।

ଇତିଶ୍ରୀ ଜାନକୀଶ ବିଳାସ ରାମାୟଣେ ଶିବଶିବା ସମ୍ବାଦେ ଆଦିକାଣ୍ଡେ
ନାମ ଅଷ୍ଟମ ଅଧ୍ୟାୟଃ ।

---

## ନବମ ଅଧ୍ୟାୟ

### ଶିବ ଉବାଚ

ଜାନକୀଶଙ୍କ ଗୁଣ ଭାବ । ଜଲ୍ପନ୍ତି ଗୌରୀ ଆଗେ ଶିବ ।୧।
ଜ୍ୟେଷ୍ଠ ଭ୍ରାତଙ୍କୁ ସଉମିତ୍ରି । ଜଣା କଲେ ଏ ରୂପେ ଉକ୍ତି ।୨।
ଜ୍ୟାଧର ନଧର ଲଇଁଣ । ଜମି ଅଛନ୍ତି ରାଜାଗଣ ।୩।
ଜୁହାର କଲ ଭ୍ରାଏ ହେବ । ଯୋଗାଏ ନାହିଁ ଏହା ଦେବ ।୪।
ଜଗନ୍ୟଜଙ୍କ ଶୁଣି ଭାଷ । ଜଳଜଦୃଗ ହେଲେ ତୋଷ ।୫।
ଜନେ ଅନାଉଛନ୍ତି ମୋଦେ । ଜାକନ୍ତେ ହୁଳ ରାମ ପାଦେ ।୬।
ଯାତନା ରାମଙ୍କର ପାଇ । ଜବଗାସନ ଉଭା ହୋଇ ।୭।
ଜବେ ତା ଧରି ବାମ-ହସ୍ତେ । ଜ୍ୟା ଦେବା ବୋଲି ବିଚାରନ୍ତେ ।୮।
ଜଗତ୍ରି ଯୁବତ୍ରି ସେ ରାତି । ଜାଣି ଡାକିଲେ ଆର୍ତ୍ତେ ଅତି ।୯।
ଜୟ ହେ ରାମ ଲୋକପାଳ । ଜଣା ନଯାଏ ରୂପବଳ ।୧୦।
ଯେବେ ମୋ ପରେ ଦେବ ଗୁଣ । ଯିବ ମୁଁ ତେବେ ବଳସଦ୍ମ ।୧୧।
ଜଗତ୍(ତ୍ରି) ଆର୍ତ୍ତ ଡାକ ଶୁଣି । ଜନମୋହନ ରଘୁମଣି ।୧୨।
ଜର୍ବ ଅଙ୍ଗୁଷ୍ଠେ ହୁଳ ଥୋଇ । ଜ୍ୟା ଦକ୍ଷ ହସ୍ତେ ଦେଲେ ନେଇ ।୧୩।
ଯେସନ ସୋଲ କାଷ୍ଠ ବାଲେ । ଜଆରୁ ଉଠାଅ(ବା)ନ୍ତି ଖେଳେ ।୧୪।

---

(୧୧) ବଳସଦ୍ମ—ପାତାଳ । (୧୩) ଜର୍ବ ଅଙ୍ଗୁଷ୍ଠ—ବୃଦ୍ଧାଙ୍ଗୁଳି ।

ଜବଗାସନ ତେତେହ୍ନେ ତୋଳ । ଯହୁଁ ଝିଙ୍କିଲେ ଗୁଣ ଚଳ ।୧୫।
ଜଗତେ ପୂରିଲ ସେ ଧ୍ୱନ । ଜ୍ୟାଧର ହେଲା ଖଣ୍ଡ ଛିନ ।୧୬।
ଜରବହ୍ମାନ ପୁରେ ଖଣ୍ଡେ । ଯାଇ ପଡ଼ିଲା ଅନ୍ତ ବୃହଣ୍ଡେ ।୧୭।
ଜହ୍ନଗଲୋକ ଖଣ୍ଡେ ସ୍ଥିତ । ଯୋ ଖଣ୍ଡ ଥିଲା ମୁଷ୍ଟି ଗତ ।୧୮।
ଜବାସୁ ବାକ୍ୟ ଫିଙ୍ଗୁ ରାମ । ଯୁଣାନ୍ତେ ହୋଇଲା ପତନ ।୧୯।
ଯେମନ୍ତ କରି ଇକ୍ଷୁ ଦଣ୍ଡ । ଜଷଇ କରି ଖଣ୍ଡ ଖଣ୍ଡ ।୨୦।
ଜନ ଉତ୍ତମ ରାମ ତେହ୍ନେ । ଜ୍ୟାଧର ଭାଙ୍ଗିଲେ ବହନେ ।୨୧।
ଜନକ ରାଜା ତାହା ଗୃହ । ଜେମାଙ୍କୁ ପାଶକୁ ଅଣାଇଁ ।୨୨।
ଜଳ୍ପିଲେ ତୋଷରେ ଏ ଗିର । ଯାଇଣ ରାଘବଙ୍କୁ ବର ।୨୩।
ଜାନକୀ ଘେନ ତାତାଦେଶ । ଜଗି ତ ଥିଲେ ହୋଇ ବେଶ ।୨୪।
ଯତନେ ବନମାଳା ଘେନି । ଯାହାକୁ କଲେ ହୋଇ ଭୁନ ।୨୫।
ଯେହ୍ନେ ଚୁମ୍ବକ ଗୃହେଁ ଲୁହା । ଯାଏ ବହନ ତେଜି ସୃହା ।୨୬।
ଜାନକୀ ସେହ୍ନ ପରକାର । ଜଯତନେ ହେଲେ ରାମଙ୍କର ।୨୭।
ଜନାର୍ଦନଙ୍କୁ ସେ କାଳେ । ଜଳଜାଳସ୍ରୁ।ଙ୍କ (କୁ) ଭେଟିଲେ ।୨୮।
ଯେତେ ସେଠାରେ ଥିଲେ ନର । ଜପିଲେ ଶତ୍ତେ ଏ ପ୍ରକାର ।୨୯।
ଜାନକୀ ତହୁଁ ରାମ ଗଳେ । ଜାପ୍ୟୁମାଳାଙ୍କୁ ଲମ୍ବାଇଲେ ।୩୦।
ଜଇବାନ୍ଦକଙ୍କୁ ବିଲୋକ । ଯେହ୍ନେ ଚକୋର ହୁଏ ସୁଖୀ ।୩୧।
ଜଳଜ ଦେଖି କବା ଅଳି । ଯେସନେ ହୋଏ ମଞ୍ଜୁଆଳି ।୩୨।
ଜାନକୀ ଶ୍ରୀରାମ ତେସନ । ଯୋଗ ହୋଇଲେ ସେହୁ ସ୍ଥାନ ।୩୩।
ଯାଆ ବୋଲନ୍ତେ ରାମ ଶଶୀ । ଜାନକୀ ଶୁଦ୍ଧାନ୍ତେ ପ୍ରବେଶି ।୩୪।
ଜନମାଙ୍କର ପଦେ ଭଟିଲ । ଜୁହାର କରି ସେ ବୋଇଲେ ।୩୫।
ଯୋଗ୍ୟତା ସୁଲକ୍ଷଣୀ ହୁଅ । ଜନମ କର ବେନି ପୁଅ ।୩୬।
ଯୁଆଇଁ ହୋନ୍ତୁ ଚିରଞ୍ଜୀବୀ । ଯାଉ ତୋ ଦିନ ତାଙ୍କୁ ସେବି ।୩୭।
ଜାନକୀ ଆଗେ ମନମାୟୁ । ଜଣାଏ ଶୁଣ ଗୋ ସୀତାୟୁ ।୩୮।
ଯା କହିଥିଲ ମୁହିଁ ପୂର୍ବେ । ଯଥାର୍ଥ ହୋଇଲା କି ଏବେ ।୩୯।
ଜ୍ୟା ସୁତା ଶୁଣି ହୋଇ ପ୍ରୀତ । ଜଳ୍ପିଲେ ଆଗୋ ପ୍ରାଣ ମିତ ।୪୦।

---

(୧୫) ତେହ୍ନେ ଚଳ ପାଠାନ୍ତର । (୧୮) ଜହ୍ନଗଲୋକ—ପାତାଳ ।
(୩୦) ଜାପ୍ୟୁ—ଉତ୍ତମ ।